# ଚୋର-କବି

ଡକ୍ଟର ବେଣୀମାଧବ ପାଢ଼ୀ

ଓଡ଼ିଶା-ଷ୍ଟୁଡେଣ୍ଟସ୍ ଷ୍ଟୋର

ପ୍ରକାଶକ :
ଶ୍ରୀ ଅନନ୍ତ ମିଶ୍ର
**କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର**
ବାଲୁବଜାର, କଟକ-୨

ପରିମାର୍ଜିତ ଦ୍ୱିତୀୟ ସଂସ୍କରଣ
୧୯୬୮

ମୂଲ୍ୟ **ଟ ୧.୨୫.**

**CHORA KAVI**

Dr. Benimadhab Padhi

*Revised Second Edition*
*1968*

Price

**Rs. 1.25.**

*Sri Hare Krushna Mahatab*
*Prime Minister*
Home, Finance and Planning
Orissa

ଶ୍ରୀ ବେଣୀମାଧବ ପାଢ଼ୀଙ୍କ ଲିଖିତ 'ଗୈରକବ'ନାମକ ଖଣ୍ଡକାବ୍ୟ ପଢ଼ି ପ୍ରୀତ ହେଲି । ଓଡ଼ିଆ ସାହିତ୍ୟ ବର୍ତ୍ତମାନ ଯେଉଁ ଅବସ୍ଥାରେ ଅଛି ସେଥିରେ ବହୁବିଧଲେଖା ପ୍ରକାଶିତ ହେଲେ ଯାଇଁ ଏହାର ଉନ୍ନତି ସାଧନ କର ହେବ ।

ଶ୍ରୀ ବେଣୀମାଧବ ପାଢ଼ୀଙ୍କୁ ତାଙ୍କ ସାହିତ୍ୟ ସାଧନା ପାଇଁ ଧନ୍ୟବାଦ ଦେଉଛି ଓ ଆଶା କରୁଛି ସେ ଏ ସାଧନାରୁ କଦାପି ନିବୃତ୍ତ ହେବେନାହିଁ ।

କଟକ
୧ . ୩ . ୪୯ ଶ୍ରୀ ହରେକୃଷ୍ଣ ମହତାବ

**Sri Anant Tripathy Sharma**

M.A.P.O.L M.L.A.

Sahityasiromani.

Meemamsa Vidyapraveena, Ayurveda Acharya

Member, Sanskrit Parishad, Orissa, &

Vice President, Ganjam District Board.

ତରୁଣ କବି ଶ୍ରୀ ବେଣୀମାଧବ ପାଢ଼ୀଙ୍କର **ଚୋରକବି** ଖଣ୍ଡକାବ୍ୟ ପାଠ କରି ପରମ ସନ୍ତୋଷ ଲାଭ କରିଅଛୁ । କାବ୍ୟଟି ସଂସ୍କୃତ କାବ୍ୟ ଗ୍ରନ୍ଥରେ ରଚିତ । ସ୍ଥଳ ବିଶେଷରେ କେତେକ ସଂସ୍କୃତ ପଦ୍ୟର ଅବିକଳ ଅନୁବାଦ ମଧ୍ୟ ସ୍ଥାନ ପାଇଅଛୁ । ବିଷୟଟି ଐତିହାସିକ ହେଲେ ମଧ୍ୟ କେତେକ ଅଂଶରେ ପରିବର୍ତ୍ତିତ ହୋଇଅଛୁ । ନାୟକ ନାୟିକାଙ୍କର ଅକୃତ୍ରିମ ସରଳ ପ୍ରେମ କାବ୍ୟର ବିଷୟ ବସ୍ତୁ । ଭାଷା ସରଳ ଓ ସରସ । କବିଙ୍କର କୃତିତ୍ୱ ପ୍ରଶଂସନୀୟ । ପୁସ୍ତକଟି ସର୍ବତ୍ର ଆଦୃତ ହେବ ବୋଲି ଆଶା କରାଯାଏ । । ଇତି ।

**ଶ୍ରୀ ଅନନ୍ତ ତ୍ରିପାଠୀ ଶର୍ମ୍ମା**

# ପରିଚୟ

ବିଶାଳ ସଂସ୍କୃତ ସାହିତ୍ୟ ସାମ୍ରାଜ୍ୟରେ ଯେତେ ମହାକବି ଜନ୍ମିଛନ୍ତି ସେ ମଧ୍ୟରୁ ବିହ୍ଲଣ ଅନ୍ୟତମ । ଏ ମହାତ୍ମାଙ୍କର 'ଚୌରପଞ୍ଚାଶିକା' ନାମକ ଖଣ୍ଡ କାବ୍ୟଟି ସାରସ୍ୟ ଓ ସାରଳ୍ୟର ଲୀଳାଭୂମି । ଏଥିରେ ସ୍ୱୟଂ କବିଙ୍କ ଅନ୍ତର ଅନୁଭୂତି ଶ୍ମଶାନରେ ରୂପ ପାଇଛି ଶ୍ଳୋକ ଆକାରରେ ; ରାଜକୁମାରୀର ଅନାବିଳ ଗୋପନ ପ୍ରେମ ମୂର୍ତ୍ତିମନ୍ତ ହୋଇଛି ଶବ୍ଦବ୍ରହ୍ମର ଅଦ୍ଭୁତ ରୂପ ଛଟାରେ । ସେଥିରେ ପ୍ରତ୍ୟବାୟର ଖ୍ୟାତି ନାହିଁ କିମ୍ବା ମୃତ୍ୟୁର ବିଭୀଷିକା ନାହିଁ । ପାରିଜାତର ଆମୋଦ ଏବଂ ପୀୟୂଷର ଆସ୍ୱାଦ ନେଇ ଗଢ଼ି ଉଠିଛି ସେ । ଥରେ ଯେ ଚାଖିଛି ସେ ସ୍ୱାଦ ଅନ୍ତିମ ନିଃଶ୍ୱାସଯାଏଁ ଆଉ ଭୁଲିପାରେ ନା ତାକୁ ; କିନ୍ତୁ କେତେଜଣ ଜାଣନ୍ତି ଏହିପରି ଶ୍ଳୋକ ପଞ୍ଚାଶଟି ପଛରେ ଏଡ଼େ ସୁନ୍ଦର ପ୍ରେମମୟ କଥାବସ୍ତୁ ଅଛି ବୋଲି ! କେତେ ଜଣ ଜାଣନ୍ତି 'ଚୌର-ପଞ୍ଚାଶିକା' ପଛର ଅବତରଣିକା କେଉଁଠି ? ଏଣୁ ସେହି ସରସ ପ୍ରଣୟ ଚିତ୍ରକୁ ସହୃଦୟ ମାନସ ପଟରେ ଆଙ୍କିବାକୁ ଯଥାଶକ୍ତି ଚେଷ୍ଟା କରିଛି । ପାଠକ-ପାଠିକା ଥରେ ମାତ୍ର ପଢ଼ି କାବ୍ୟ କବିଙ୍କ ଅନ୍ତରର ସରସତାକୁ ଅନୁଭବ କଲେ ଶ୍ରମ ସାର୍ଥକ ମନେ କରିବି ।

**ଲେଖକ**

# ସୂଚୀ

# ଚୋର-କବି

## ପ୍ରଥମ ସର୍ଗ

( ରାଗ—କେଦାର କାମୋଦ )

ଜାହ୍ନବୀତଟେ ବାରାଣସୀ ଶୋଭନ,
ଛାୟାପଥ ମଧ୍ୟେ ଶଶାଙ୍କ ସମ ।
ଭୂତଳେ ଜମ୍ବୁଦ୍ୱୀପ ନିର୍ମଳସର,
ରାଜେ ଭାରତ ତହିଁ ଦିବ୍ୟ କମଳ,
ତା ମଧ୍ୟେ ବାରାଣସୀ କିଂଜଳକ୍‌ସମ,
ଶିବମନ୍ଦିର ବରାଟକ ସୁଷମ ।
ପାର୍ଶ୍ୱେ ଅରଣ୍ୟାନୀ ନୀଳ ବସନା,
ନୀଳପାଦପରାଜି ନୀଳ ଦର୍ଶନା ।
ନୁହେଁ ସେ ଅରଣ୍ୟାନୀ, ବିଟପପୁଞ୍ଜ
ବିଟପୀ ବିଟପରେ ରହିଛି ପୂରି ।
ଫଳସମ୍ପତ୍ତି ବନ୍ତ ବିଶାଳ ଦ୍ରୁମ
ଭୂମ୍ୟଧିକାଶ୍ରି ଯେବ ବିତତ ଗୁଳ୍ମ ।
କୁସୁମ ଗୁମ୍ଫାବୃତା ଲତିକା ତତି,
ପୁଷ୍ପାବତଂସ-ବାମା ତୁଲ୍ୟ ରାଜନ୍ତି ।

ଫୁଲ୍ଲ କଳିକା — କୋଳେ କେଉଁ ଲତିକା
ଉଦ୍ଭିଦ ଜନନୀ ପ୍ରାପ୍ତେ ଶିଶୁଧାରିକା ।
ନଗର ରକ୍ଷ ଯୋଦ୍ଧା ପ୍ରାଚୀନକ ଧ୍ରୁବ*
ଉନ୍ନତଶିରେ ଉର୍ଦ୍ଧ୍ୱ ଯେ ଯାହାଠାବ ।
କିବା ବିଶ୍ୱେଶ-ଆଜ୍ଞା-କାଶ ପ୍ରହରୀ
ମୁକ୍ତିନଗରୀ-ପଥ ଛନ୍ତ ଆବୋରି ।
ପଶ୍ଚିମେ ସରୋବର ନୀଳକମଳ
କମଳେ ସୁମଞ୍ଜୁଳ ନୀଳକମଳ ।
କହ୍ଲାର କୁବଳୟ ଶୁଭ୍ର-କୁମୁଦ,
ନବୀନ-ଶଇବାଳ ବିରଚେ ମୁଦ ।
କାହିଁ ଚକ୍ରାଙ୍ଗୀ କରି ଚକ୍ର ଭ୍ରମଣ
ଗଗନେ ଏକ ଚନ୍ଦ୍ରେ କରେ ବୀକ୍ଷଣ ।
ଚୁମ୍ବି ବ ପଣ୍ଡିବକ୍ତ୍ର ପିରତି-ଭୋଳେ
ପ୍ରଦୋଷ କୁହୁକମା ନଦେଖି ଡୋଳେ ।
କାହିଁ କୋକ ଦମ୍ପତି ନଭ୍ରୁଜ-ଶାଖେ
ଚୁମ୍ବି ଚଞ୍ଚୁରେ ଚଞ୍ଚୁ ଖୁମ୍ପନ୍ତ ପକ୍ଷେ ।
କାହିଁ ମଉନେ ବକ ଯୋଗୀସମାନେ
ଖୋଜେ ମରାଳ ବିଷ ପଦ୍ମ ଭବନେ ।
କାହିଁବା ମାଛରଙ୍କା ମେଲାଇ ଡେଣା
ଫୁରୁ ଫୁରୁ ଶବଦେ ହୋଇ ଉନ୍ମନା ।
ଝସି ପଡ଼େ ସଲିଳେ ଝଲସେ ଚକ୍ଷୁ
ଛୁଇଁ ନ ଛୁଇଁ ପୁଣି ଉଡ଼ାଏ ବପୁ ।
କାହିଁ ବାମ ଲୋଚନା ଲୋଚନ ସର
ଝଲସାଇ ବିଗ୍ରହ ଲୁଚେ ଶଫରୀ ।

* ଲଣ୍ଡିତବୃକ୍ଷ

କାଶକୁସୁମ-ପୁଞ୍ଜ ଦିଗ ଉତ୍ତରେ
ଯଥାର୍ଥ ନାମା "କାଶୀ" ବୋଲି ଉତ୍ତରେ ।
ଦୂରେ ଦିଗନ୍ତରେଖା ବର୍ତ୍ତୁଳାକାର
ଶିଖାଏ ମାନବକୁ 'ଭୁକ୍ତି ସଂସାର,
ଅନନ୍ତ ଜଳଧି ଏ ଅନନ୍ତ ରୂପ,
ଅନନ୍ତ-ବିଶ୍ୱେ, କୋଟି-କୀଟ ମାନବ
ବିଶ୍ୱେଶ-ସେବା ବିନା ନାହିଁ ମୁକତି',
ତେଣୁ ବର୍ତ୍ତୁଳ ରୂପ ବର୍ତ୍ତୁଳ ଗତି ।
ପ୍ରବହେ ଭାଗୀରଥୀ ନିର୍ମଳ ଧାରା
ପତିତ ଉଦ୍ଧାରିଣୀ ତରଙ୍ଗ-ମାଳା ।
ତା ତଟେ କାଶୀପୁର ରାଜ ନଗର ;
ବାମା-ଲଲାଟ ତଟେ ଯଥା ସିନ୍ଦୂର ।
ପ୍ରାସାଦ ଚୂଳେ ରାଜେ ସ୍ୱର୍ଣ୍ଣ କଳଶ
ପତାକା ଉଡ଼େ ଫରଫର ଆକାଶ ।
ଡାକେ କି ପାପି ଜନେ କମ୍ପନ ବ୍ୟାଜେ
ଶରଣ ପଶିବାକୁ ବିଶ୍ୱେଶ ପାଦେ ?
ନଗର ଚତୁଃସୀମା ଉଦ୍ୟାନ ଭରା,
ଯହିଁ କୁସୁମ ଛଳେ ଫୁଟନ୍ତି ତାରା ।
ଅନଙ୍ଗ ବାଛି ବାଛି ସଜାଡ଼ି ଶର
ମନ-ମୃଗ ବନ୍ଧନେ ଯହିଁ ତତ୍ପର ।
ଗିରୀଶ ନେତ୍ରବହ୍ନି ଭୟେ କି ଅବା
ଲୁଚି ରହି ଗୋପନେ ଦେଖାଏ ବିଭା !
ମଧ୍ୟେ କ୍ରୀଡ଼ା-ସରସୀ: ସ୍ଫଟିକ ବନ୍ଧ,
ମଣିମୟ-ପାବଚ୍ଛ, ସୁବର୍ଣ୍ଣ ସନ୍ଧ,

ନୀଳମଣି-ସଲିଳ, ହୀରକ-ଦଳ,
ପଦ୍ମରାଗ-ପଙ୍କଜ, ମୋତି-କେଶର,
ରୌପ୍ୟମରାଳ ମାଳା ତଥି ଉପରେ
ଜମ୍ବୁନଦ ଚରଣେ ସନ୍ତରେ ଧୀରେ ।
ତା ମଧ୍ୟେ ଗଜଦନ୍ତ-ଖଚିତ ସ୍ତମ୍ଭ
ଦର୍ଶନ ମାତ୍ରେ ହରେ ହୃଦୟ-ଦମ୍ଭ ।
ଶୋଭେ ପାର୍ଶ୍ୱେ ତାର ଦିବ୍ୟ ଜଗତ
ସୁଧାଧବଳ, ଚନ୍ଦ୍ର ବିଚର୍ଣ୍ଣ ଭିତ୍ତି ।
ଅଙ୍କିତ ବାରନାରୀ-ସଲାସ୍ୟ-ଭଙ୍ଗୀ
ନୟନପ୍ରାନ୍ତ ଗୁରୁକଟାକ୍ଷ ସଙ୍ଗୀ
ପାର୍ଶ୍ୱେ ପଦାତି ଧରି ସୁବାରବାଣ
ଊର୍ଦ୍ଧ୍ୱେ ଟେକିଛି ଖଣ୍ଡା କରିବ ରଣ ।
କାହିଁ ରଥୀକୁ ଅଚେତନ ଦେଖିଣ
ପଳାଏ ତୁରଙ୍ଗମ ସୈନ୍ୟ ମଧ୍ୟେଣ ।
କାହିଁବା ମଲ୍ଲଯୁଗ୍ମ ମାଲ ବନ୍ଧାଣ୍ଟି
ମୁଷ୍ଟି ଉଠାଇ ଊର୍ଦ୍ଧ୍ୱେ ଦେଖାନ୍ତି ଟାଣ ।
ପଶ୍ଚାତେ ରାଜେ ତାର ଶୁଦ୍ଧାନ୍ତଃପୁର
ରମଣି କଳନାଦେ ସଦା ମଧୁର ।
ସେ ନାଦ ଅନ୍ତରୀକ୍ଷେ ଯାଇ ପ୍ରସରି,
କହଇ ମୋ ସମାନେ ନାହିଁ କି ପୁରି ?
ବାସ ଚହଟି ଦଶଦିଗ, ସୌରଭେ
ନନ୍ଦେ ନନ୍ଦନ ତୁଚ୍ଛ କରି ଗରବେ ।
ସପଦେ ଧିକାରଇ ଅଳକାପୁରୀ,
ତରୁଣୀ କଳକଣ୍ଠ ସଙ୍ଗୀତ ସ୍ୱରି ।

ତା ମଧ୍ୟେ ରାଜଜେମା-କେଳିମନ୍ଦିର
ମନ୍ଦିର ଶୁଦ୍ଧେ କାମପ୍ରେମ କୁଟୀର ।
ରତନଖଚ ଗୃହପାର୍ଶ୍ୱେ ଶୋହେ,
ମଣିମୟ ପଲଙ୍କ, ତୂଳି ଶଯ୍ୟାଏ,
ହୀରକଖଣ୍ଡ, ଶୁଭ୍ରସ୍ୱର୍ଣ୍ଣଦଣ୍ଡା,
ଲମ୍ବିତ ଗଜମୋତି ଫେଣ୍ଡାକୁ ଫେଣ୍ଡା ।
ସମ୍ମୁଖେ ପଦ୍ମରାଗ ପୀଠ ଆସନ
ବିରାଜେ ଗ୍ରନ୍ଥାବଳୀ ଚିତ୍ରସମାନ ।
ସ୍ୱଜାତି ଭାବେ ମନେ ସିନେହ ବନ୍ଧି
ବାସ କରନ୍ତ କିବା ବାଣୀ ସେଠାଇଁ ?
ପାର୍ଶ୍ୱେ ସୁଖାସନ କ୍ଳାନ୍ତ ହରଣେ
ଯୋଗୀଜନନୟନ ରମେ ଦର୍ଶନେ ॥
ମନ୍ଦିର ଲାଗି ରାଣୀବାସଭବନ,
ହଂସଭବନ, ପୁଣି ରାସଭବନ,
ଶୟନପୁର, ଦେବ-ଅର୍ଚ୍ଚନାପୁର,
ପାଲଟାବାସପୁର, ମାଜଣାପୁର,
ମଣୋହିଘର, ମିଷ୍ଟ-ଭକ୍ଷଣଘର,
ଶିଙ୍ଗାରଘର, ଗନ୍ତା-ଘର ସୁନ୍ଦର,
ସ୍ନାନମନ୍ଦିର, କାଠି-ଲାଗିମନ୍ଦିର,
ମୁକ୍ତମନ୍ଦିର ପୁଣି, ଗୁପ୍ତମନ୍ଦିର,
ମନ୍ଦିର ପରସ୍ପର ଏକୁ ଆରେକ,
ଶୋଭା ବଢ଼ା ସୁଷମା ପୂର୍ଣ୍ଣ ଯେତେକ,
ସର୍ବାଗ୍ରେ ବିରାଜିତ ଶ୍ରୀ ଦରବାର
ଶଶିକାନ୍ତ-ନିର୍ମିତ ଧରଣୀ-ତଳ ।

ଉର୍ଦ୍ଧ୍ୱେ କାଞ୍ଚନଶିଖା ଆଲୋକବୃକ୍ଷ,
ନିଶା-ଦିବସ-ଭେଦ ନୁହେଁ ପ୍ରତ୍ୟକ୍ଷ,
ଦିବ୍ୟଧାତୁ-ଗଠିତ ସଦନ ଭିତ୍ତି
ଦରଶକ ଲୋଚନେ ଘଟାଏ ଭ୍ରାନ୍ତି,
କିବା ଏ ରାଜସୂୟ ମୟମଣ୍ଡପ
ରହିଛି ଆସି ଭିନ୍ନେ ଦେଖାଇ ରୂପ ?
ସର୍ବୋଚ୍ଚେ ରତ୍ନାଞ୍ଚିତ ସିଂହାସନ
ଆସନ—ତଳେ ଉଭା ପଞ୍ଚ-ଆନନ ।
ପ୍ରପଞ୍ଚ ବକ୍ତ୍ର ଅତିପ୍ରପଞ୍ଚ ଠାଣି
ବନ୍ଦ-କନ୍ଦର ଘୂର୍ଣ୍ଣି ବନ୍ଦ-ଗୃହାଣୀ
କି ଅବା ହୈମବତୀ-ଆଜ୍ଞାପ୍ରେରିତ-
କେଶରୀ ଦରବାରେ ହୋଇ ଆଗତ
ଜଣାଏ ନରପତି-ଶିବଭକତି
ଶିବାନୁଗ୍ରହ ସଙ୍ଗେ ରାଜ-ବିଭୂତି ।
ଉପରେ ଚନ୍ଦ୍ରାତପ ଶାରଦାକାଶ,
ନକ୍ଷତ୍ର ମଣ୍ଡଳୀରେ ଦିଶେ ସୁଦୃଶ୍ୟ ।
ଭୂତଳେ ମଖମଲ-କୋମଳାସନ
ଦ୍ୱିଗୁଣେ କରେ ପୁର-ଶୋଭା ବର୍ଦ୍ଧନ;
ଆସନେ ଉପବିଷ୍ଟ ବିବୁଧ ବ୍ରଜ
ଯେ ଯାହା ସମାନରେ ହୋଇଣ ସଜ,
ସ୍ୱ-ପ୍ରତିବିମ୍ବ ବସି ଦେଖନ୍ତି ହେଲେ
ବାମେ, ଯାମ୍ୟେ, ସମ୍ମୁଖେ, ପୃଷ୍ଠେ, ଭୂତଳେ;
ଭାବନ୍ତି ହୃଦେ ଯଥା ସେ ମାୟାପୁରୀ
ମାୟା ବିସ୍ତାର କରି ଦେଖାଏ ଶିରୀ,

ସିଂହାସନ ଦକ୍ଷିଣେ ରୌପ୍ୟ ଆସନ,
ତା ମଧ୍ୟେ ଉପବିଷ୍ଟ ସଚିବାଗ୍ରଣୀ ।
ଶିରେ ଶୁଭ୍ର ଉଷ୍ଣୀଷ, ଅଙ୍ଗେ କବଚ,
ବାମେ ଲମ୍ବିତ ତରବାରି ସୁସଞ୍ଜ,
ଦୃଢ଼ତାବ୍ୟଞ୍ଜୀ ଭ୍ରୂ ଉଟି ଲଲାଟେ
ଧୀର-ଉଦାର-ଶାନ୍ତ-ଭାବ ପ୍ରକଟେ ।
କିବା ସେ ସାମଦାନ – ଭେଦ ବିରେଖା
ଜନମ କାଳୁ ବିଧି-ଶ୍ରୀହସ୍ତଲେଖା !
ସମ୍ମୁଖେ ସଭାସଦ ବିଦଗ୍ଧକୁଳ
ରାଜଦତ୍ତ ସମ୍ମାନ-ପୂର୍ଣ୍ଣ ଶରୀର;
ସୁଧର୍ମା ତୁଚ୍ଛ କରି ଜ୍ଞାନ ଗୌରବେ
ଉପହସନ୍ତି ମନେ ଗୁରୁବର୍ଗବେ ।
ପାର୍ଶ୍ୱେ ଉଭବନ୍ଦୀ ଧୀର ଗମ୍ଭୀରେ
ଗାଇବ କୀର୍ତ୍ତିସ୍ତୁତି ମନ୍ଦ୍ର ନାଦରେ ।
ତୋରଣଦ୍ୱାରେ ପ୍ରତିହାରୀ ସଭୟରେ
ଅପସାରେ ଦର୍ଶକ ବେନ୍ତ ହସ୍ତରେ ।
କିପାଇଁ ଆଜ ଏତେ ଜନ ଗହଳ,
ଆସନ୍ତି ଛନ୍ତି ଏବେ ଅବନୀପାଳ ।
କରିବେ ଦୁହିତାର କାମନା ସିଦ୍ଧି
ନିଯୋଜିବେ ପଣ୍ଡିତ କବି-ସୁବୁଦ୍ଧି ।
ତେଣୁ ତାର୍କିକ, ବିଜ୍ଞ ବୈୟାକରଣ,
ବେଦବିଦ, ଛନ୍ଦଜ୍ଞ, ସ୍ମୃତିନିପୁଣ,
ମୀମାଂସକ, ବେଦାନ୍ତ, ସାହିତ୍ୟ ଜ୍ଞାନୀ,
ଜ୍ୟୋତିଷ, ଆୟୁର୍ବେଦ, କୋଷାଭିଧାନୀ,

ପୁରାଣ ଧର୍ମଜ୍ଞାନୀ, ଐତିହାସିକ
ନାଟ୍ୟ କଳାଦି ବିଶାରଦ ଯେତେକ ।
ଆସିଣ ଠୁଳ ସର୍ବେ ଶ୍ରୀ ଦର୍ଶିବାରେ;
ବିଦ୍ୟା ଗାରିମା ଦେଖାଇବେ ଗୁମୁଟରେ ।
ଏ କାଳେ ଶୁଭେ ଉଚେ କାହାଳୀ ସ୍ୱନ,
ଘନ ଘନ ଉଠିଲା ଶଙ୍ଖ ନିଃସ୍ୱନ;
ଗାଇଲେ ବନ୍ଦିଗଣ କୀର୍ତ୍ତି ଗୀତି;
ପଢ଼ିଲେ ଜଗତିଷେ ମଙ୍ଗଳ ସ୍ତୁତି ।
ବିଜୟେ ନରପତି ପାଦେ କଠାଉ
ମାଣିକ୍ୟ ତେଜେ ଜଳେ କି ଦାଉ ଦାଉ ।
ସର୍ବାଙ୍ଗ ରାଜ ପଟ୍ଟ-ଛଦେ ଆବୃତ
ମସ୍ତକେ ଶୋହେ ଅଷ୍ଟ-ରତ୍ନ-କିରୀଟ ।
କିବା ସେ ଅଷ୍ଟଫଣାବନ୍ତ-କୁଣ୍ଡଳୀ
କାଶୀପତି ବିସ୍ମରେ ଅଛି ଆବୋରି ,
କି ଅବା ଭାଗୀରଥୀ ପତି ସଦନେ
ହିପାଦି ରତ୍ନରାଜି ସହେ ଆପଣେ,
ରଞ୍ଜି ଅଛନ୍ତି ରାଜ ଭୂଷା ମୁକୁଟ
ରତ୍ନାକର ମହିମା କରି ପ୍ରକଟ ।
ସିଂହ ଆସନେ ବିଜେ କରି ଭୂପତି
ଗୁରୁ-ଗମ୍ଭୀର-ସ୍ୱରେ ବାଣୀ ଭଣନ୍ତି ।
"ଶୁଣ ହେ ସଭାସ୍ଥିତ ବିବୁଧ-କୁଳ !
କିପାଇଁ ସର୍ବେ ଆଜ ହୋଇଛ ଠୁଳ ।
ମୋ କନ୍ୟା ମଞ୍ଜୁଲତା ଶାସ୍ତ୍ରପ୍ରବୀଣା
କାବ୍ୟ-କବିତା ରସେ ହୋଇ ଉନ୍ମନା,

କାବ୍ୟ ରଚନେ ତାର ବଢିଛୁ ପ୍ରୀତି
କେ ଶିକ୍ଷା ଦେବ ବେଗେ, କହ ଝଟିତି ।”
ସେନାପତି ନିର୍ଦ୍ଦେଶେ ଯଥା ସଘନ
ଗରଜ ଉଠନ୍ତି କରି ଭୀମ ତର୍ଜନ,
ତଥା ଉଠିଲେ ରବେ ସର୍ବ ପଣ୍ଡିତେ
ଯେଝା ଶାସ୍ତ୍ର ଗାରିମା ବଖାଣି ମୁଖେ ।
କେ କହେ “ବ୍ୟାକରଣ ମୂଳ ଆଧାର
ତା ବିନା କାହିଁ କାବ୍ୟ କବିତାସାର ?
ଦିଅନ୍ତୁ ଆଜ୍ଞା ମୋତେ ନରଉତ୍ତମ !
କରାଇବି ଜେମାକୁ ପାଣିନିସମ” ।
କେ କହେ “ଆଦେଶନ୍ତୁ ହେ ପୃଥ୍ୱୀଶ୍ୱର !
ଷଣ୍ମାସେ ହେବ କନ୍ୟା ସୁକବୀଶ୍ୱର;
ମନ୍ତ୍ରଜ୍ଞାନ ବିହୁନେ କାବ୍ୟ କବିତା
ନଘଟେ ବ୍ୟାକରଣେ ନୁହେଁ ଅନ୍ୟଥା” ।
କେ ବୋଲେ “ଛନ୍ଦଜ୍ଞାନ ବିନା ରଚନା
ନୀରସ ହୁଏ ସଦା ହେ ମହାମନା !
ଯତିପାତନଗୁରୁ-ଲଘୁ ନିୟମ
ଅଭାବେ ହୁଏ ସିନା କାବ୍ୟ ଅଧମ” ।
ପୁଣି କେ କହେ ତହିଁ ଶିର ଝୁଲାଇ
“ଯୁକ୍ତିହୀନ କବିତା ବ୍ୟର୍ଥ ସିନାଇଁ
ନ ଥିବ ଅନୁମାନ ପ୍ରତ୍ୟକ୍ଷ ଯହିଁ
ସେ କାବ୍ୟ କାବ୍ୟ ନୁହେଁ ଅବନୀସାଇଁ! ”
ତା ମଧ୍ୟୁଁ ଉଠି ଏକ ବିପ୍ରପ୍ରବର
ହେମଗଉରକାନ୍ତି, ଯୁବା ଶରୀର,

ଧୀର ଗମ୍ଭୀର ଚକ୍ଷୁ ପ୍ରଶସ୍ତ ଭାଲ,
ସୁନ୍ଦର-ସୁଗଠନ-ଯୁଗ୍ମ କପୋଳ,
କେଶହୀନ-ମସ୍ତକେ ସୁଗୁରୁ ଶିଖା
ଶଶାଙ୍କେ ଲଗ୍ନ କବା ଲଞ୍ଜି ତାରକା ?
ବିମଳ-ଶୁଭ୍ରବାସେ ଆବୃତ ଅଙ୍ଗ,
ଶୁଭ୍ରଶାରଦ ଆଭେ ବିଜୁଳୀ ସଙ୍ଗ !
ବାମ କରେ ଶୋଭିତ ତାଳୀ ପୁସ୍ତକ,
ଦକ୍ଷେ ଖଣ୍ଡ-ଲେଖନୀ, ପ୍ରଶାନ୍ତ ମୁଖ;
ବିନମ୍ରେ ସମ୍ବୋଧନ ପୃଥିବୀ ନାଥେ
ଭାଷିଲେ ମୃଦୁମନ୍ଦେ ସଭା ପୁରତେ ।
"ସ୍ୱୟଂବରା ନବୀନା କବିତା ବାଳା
ନ ବରେ ବ୍ୟାକରଣେ ଜନକ ପରା,
ତାର୍କିକ ସହୋଦର ପରାଏ ସିନା,
କପରି ବରମାଳା ଦେବ ସୁମନା ?
ମୀମାଂସା-ବିଶାରଦ କ୍ଳୀବ ଧୀମାନ
ଅଗ୍ନିହୋତ୍ର ବିନା ସେ ନ ଜାଣେ ଆନ,
ରସାଳସା କବିତା-ରସାସ୍ୱାଦନ
ନ କରେ ବୋଲି ତାରେ ଆଦର ହୀନ ।
ଚଣ୍ଡାଳ ଜ୍ଞାନେ ଶ୍ରୁତି ଛନ୍ଦସପ୍ରୀତି
ଅନ୍ୟ ପଥେ ଯୁବତୀ ବଳାଏ ମତି ।
ବର୍ଣ୍ଣ ଗଣନା କାବ୍ୟ ଅକାବ୍ୟ ସିନା
ତେଣୁ ସୁଦୂରେ ଲୁଚେ ଯାଇ ଲଳନା ।
କାବ୍ୟ ନାଟକ ଅଳଙ୍କାରେ ମଣ୍ଡିତ-
ଯୁବା-ଦର୍ଶନେ ବାଳା ଉତ୍ଫୁଲ୍ଲ-ଚିତ୍ତ ।

ସ୍ୱୟଂ ବର୍ତ୍ତ୍ଣମାଳା ଶ୍ରୀକରେ ଘେନ
ହର୍ଷେ ପିନ୍ଧାଏ କଣ୍ଠେ ବର-ତରୁଣୀ ।
ମୋ କଥା ଅବଧାନେ ଆଣନ୍ତୁ ରାଜା ।”
ଏତେ କହି ଆସ୍ଥାନେ ବସିଲେ ଯୁବା ।

ନୃପତି ଦିବ୍ୟଦୃଷ୍ଟି ଦେଇ ସଚିବେ
ଇଙ୍ଗିତେ ଆଦେଶିଲେ ଜଙ୍ଗାସୁ ଭାବେ ।
ସଚିବ ଅନୁରୋଧେ ଯୁବା ଉଠିଣ
ଆପଣା ପରିଚୟ କଲେ ବଖାଣ ।
“ବାସଭୂମି କାଶ୍ମୀର, ବଂଶଦ୍ୱିଜାତି,
ନାମ ବହ୍ଲଣ, ପରାଶର ସନ୍ତତି,
ଅର୍ଦ୍ଧ ଶତାବ୍ଦ ବୟ, ସୁବ୍ରହ୍ମଚାରୀ,
ଦିଗ୍‌ବିଜୟ ମାନସେ ଛନ୍ତି ବାହାରି ।
ଶିକ୍ଷା କାବ୍ୟାଦି ଅଳଙ୍କାର ସାହିତ୍ୟ
କବିତା ରସାମୋଦେ ସରସ-ଚିତ୍ତ” ।

ଶୁଣି ନୃପତି ଧୀରେ ବଚନ୍ତେ ଭାଷି
“ସଦୟେ ଅନୁଗ୍ରହ କର ସନ୍ୟାସି !
ଜେମା ହୃଦୟୁ ହର ମନୋବେଦନା
ଆଜୁଁ ତୁମ୍ଭର ଶିଷ୍ୟା ହେଲା ମୋ କନ୍ୟା” ।
ତୁହିଁ ମନ୍ତ୍ରୀବଦନ କହେ ନୃମଣି
“ଶୁଭ ଦିବସେ ଶୁଭମୁହୂର୍ତ୍ତ ଗଣି
ପ୍ରାରମ୍ଭିକ ଯୋଗାଡ଼ ସଜାଡ଼ ବ୍ୟଗ୍ରେ;
ଯଥାବିଧି ଉତ୍ସବ କରାଅ ନଗ୍ରେ ।”

ଆଦେଶି ନରଗଣ ବିଜେ ନବରେ
ରାଜା-ଶଶାଙ୍କ ଯଥା ବାରୁଣୀ ଶିରେ,
ବୁଧ କୁମୁଦ-ବନ କରୁ ମୁଦ୍ରିତ
ବିହ୍ଲଣ-ସରସିଜ ହେଲ୍ ରଞ୍ଜିତ ।
ମାତ୍ର ସଚିବ-ହୃଦେ ହର୍ଷ ବିଷାଦ
ସମକାଳେ ସରଜି କଳହ ବାଦ
ଆରମ୍ଭିଲେ ବିଗ୍ରହ; ସୁଧା କଳଶ-
ଆଶେ ପୂର୍ବେ ଯଥା ଦେବ ରାକ୍ଷସ ।
ଚିନ୍ତାକୁଳ ମାନସେ ସଚିବ ଧୀରେ
ପ୍ରଣମି ସଭା ଜନେ ଚଳିଲେ ପୁରେ ।

---

# ଦ୍ୱିତୀୟ ସର୍ଗ

(ରାଗ—ରାମକେରୀ)

ସ୍ୱମ ନିସ୍ତବ୍‌ଧ ଧରଣୀ— , କୋଳେ ରଜନୀ ବାଳା
ନୀହାରେ ଆଚ୍ଛାଦି ଶ୍ରୀଅଙ୍ଗ ରଚେ ଗୁପତ ଲୀଳା
ଲିଭାଇ ଭାସ୍କର-ପ୍ରଦୀପ ଅନ୍ଧ କଲା ନୟନ
ନିଦ୍ରାମନ୍ତ୍ରପାଣି ସିଞ୍ଚିଲା ହରି ଜଗତ ମନ
ମୁଖର-ବିହଗ-ନିକର ନିଭୃ ଦେଲା ଘଉଡ଼ି
ନିଶାଚର ସେନା ପୁଞ୍ଜିକୁ କରାଇଲା ପ୍ରହରୀ ।
ଯେ ଅଟେ ଯେମନ୍ତ, ସେ ଜାଣେ ତାର ମରମ ସିନା।
ନିଶାଚର କଥା କେ ଜାଣେ ନିଶାଚରଙ୍କ ବିନା ?
ଛଳେ କଉଶଳେ ମୁଦିଲା ଜନ-ନେତ୍ର କପାଟ
ଉନ୍ମୁକ୍ତ ଲୋଚନେ ବିହ୍ୱଲ ମନମଥ-ଉଚ୍ଚାଟ ।
ସେହି ଦିନୁ କାମୀ କାମିନୀ ଅନ୍ଧ ଥାଉ ନୟନ
ନ ପାରନ୍ତି ଦେଖି ପାରୁଶେ ତାଙ୍କ ବିନା ସେ ଆନ ।
ଝିଙ୍କାରୀ-ଦୂତୀକ ନିକଟେ ରାଇ କହଇ କାନେ
ବିଜନତା ସହଚରୀ କି ଆଣି ଡାକ ବହନେ ।
ଡାକ-ଛଳେ ଝିଲ୍ଲୀ ରାବିଲା ସନ୍ଧୁଁ ପଞ୍ଚମସ୍ୱରେ
ହୁଁକାରେ ପେଚକ ନିବାରେ ରହି ରହି ମଧ୍ୟରେ ।

ଶେଷେ ବଜନତା ସୁନ୍ଦରୀ ଶୂନ୍ୟ ଖସିଲେ ଧୀରେ
ହି ଅମ୍ବକ-ଶିର ଶୋଭନୀ କଳନାଦ ସଙ୍ଗରେ ।
ଏକାଳେ ପଲ୍ଲବେ ପଲ୍ଲବ କହେ କମ୍ପନ ସ୍ୱରେ
“କାଳ ଦୃଷ୍ଟ ଆସି ଗଲା ହୋ ରହ ଏବେ ନିଶ୍ଚଳେ ।
ଗୁପ୍ତବାର୍ତ୍ତାବହ ଅନିଳ ଲୁଚିଥିଲା ମଉନେ
ତତକ୍ଷଣେ ପାଶେ ମିଳିଲା ଶୁଣି ସେ କଥା କାନେ ।
କବୋଇଲୁ ବୋଲି ଚପେଟା- ଘାତ ଦୃଢ଼େ ବାଜିଲା
ତେଣୁ କି ଶିଶିର ବ୍ୟାଜରେ ଅଶ୍ରୁଧାରା ଗଡ଼ିଲା ।
ସେଦିନୁ ପଲ୍ଲବ ସନ୍ତତି ନିଶାକାଳେ ନୀରବ
ବିଜନତାଦୁଃଖ ସହନ୍ତି ମନେ ଲଭି ବିଷାଦ ।
ନିର୍ଜନ ଜାହ୍ନବୀ-ପୁଳିନ ଶୁଭ୍ର ସିକତାରାଶି
ଅଜ୍ଞାନାଭ ତମ ପୁଞ୍ଜରେ ଦୂରୁ ଦିଶି ନ ଦିଶି ।
ଅଦୂରେ ଶୋଭଇ ଉଜ୍ଜ୍ୱଳ- ତେଜ ମହାଶ୍ମଶାନ
ଯାର ଧୂମଗନ୍ଧ ପରଶେ ପୂତ ଶିବ ଆସ୍ଥାନ,
ସୂର୍ଯ୍ୟବଂଶୀ ସାର୍ବଭଉମ ଯାର ପ୍ରହରୀ ହୋଇ
ପାରି ହେଲେ ସତ୍ୟସାଗରୁ ଦାନେ ବିତରି ମହୀ ।
ମଧ୍ୟେ ଊର୍ଣ୍ଣବାସ ବେଷ୍ଟିତ ବୃଦ୍ଧ ଚଣ୍ଡାଳରାଜ
ଚିତାନଳେ ଶୀତ ନିବାରେ ଛାଡ଼ି ଯାମିକ କାର୍ଯ୍ୟ ।
ଶ୍ୟାମଳ କେଦାରେ ଶୁଭଇ ଥରେ ଥରେ କୁହାଟ
କୁହାଟ ନୁହଇ କୃଷକ- କଷ୍ଟ ପୁରାଣପାଠ ।
ଏକାଳେ ଦ୍ୱିତଳ ପ୍ରାସାଦେ ବସି ମନ୍ତ୍ରୀପ୍ରବର
ଅପଲକେ ଚାହିଁ ଆକାଶେ କରୁଥିଲେ ବିଚାର ।
ଦୃଷ୍ଟି ସମ୍ମୁଖରେ ରଙ୍ଗଣ କ୍ଷୁଦ୍ରଜ୍ୟୋତି ଦେଖାଇ
ଲୁଚୁଥିଲା କ୍ଷଣେ ଅନ୍ଧାରେ କ୍ଷଣେ ଆଲୋକ ଦେଇ ।

ଆକୁଞ୍ଚିତବପୁ ତାରକା    ଥରେ ସଂପ୍ରସାରିତ,
ଥରେ ଲୁପ୍ତ, ଥରେ ଗୁମ୍ଫିତ,    ଥରେ ପୀତ ଲୋହିତ ।
ସେ ସୌନ୍ଦର୍ଯ୍ୟ ସୁଧା ପାନରେ ନାହିଁ ସଚିବମନ
ଗମ୍ଭୀର ବଦନ-ମଣ୍ଡଳ    ଦୃଷ୍ଟି ଏକଧିଆନ ।
ଗ୍ରହନକ୍ଷତ୍ରାଦି ସଞ୍ଚାର    କରିବାକୁ ଗଣନ
ମହାମନା ଚନ୍ଦ୍ରଶେଖର    କିବା ଉପବେଶନ !
ଅବା ସ୍ୱର୍ଗସୀମା କଳନା    କରୁଛନ୍ତି ଭାର୍ଗବ;
ଯୋଗନେତ୍ରେ ତହୁଁ ଦେଖନ୍ତି    ନାଶିବାକୁ ବିଭବ ?
ଅକାଳ ବିହଙ୍ଗରବେ    ଥରେ ଥରେ ଚମକି
ପୁଣି ମଗ୍ନ ଚିନ୍ତାସାଗରେ    ଅନ୍ତରିକ୍ଷେ ନିରେଖି ।
ଧର୍ମ କୁରୁକ୍ଷେତ୍ରପ୍ରାଙ୍ଗଣେ    ଲାଗିଥିଲା ସମର
'ଶାନ୍ତି' 'ଭ୍ରାନ୍ତି' ଦୁଇ ସେନାନୀ    ମଧ୍ୟେ ପ୍ରଶ୍ନ ଉତ୍ତର;
ଶାନ୍ତି ସମ୍ବୋଧିଣ ଭ୍ରାନ୍ତିକି    କହେ "ଶୁଣରେ ଭାଇ,
ଏ ମାୟାସଂସାର ମଧ୍ୟରେ    ତୋର ଆସ୍ଥାନ ନାହିଁ ।
ପରବଶ ବାହ୍ୟଇନ୍ଦ୍ରିୟେ    ସର୍ବ ଜନ୍ତୁଙ୍କ ମନ
କାମକ୍ରୋଧାଦିର ନିର୍ଦ୍ଦେଶ    ମାନି ଚଳନ୍ତି ଜାଣ ।
ଯେତେ ଦମ୍ଭୀ ହେଉ ପଛେ ସେ କାମଗ୍ରାସରେ ପଡ଼ି
ଉଭରି ଯାଏ କି କୁସୁମ-    ଶରାସନକୁ ଏଡ଼ି ?
ଘୃତକୁମ୍ଭ ପ୍ରାୟେ ଅବଳା    ତପ୍ତଅନଳ ପୁଂସ
ଏକତ୍ର ସଂଯୋଗେ ଅବଶ୍ୟ    ଲଭନ୍ତିଟି ବିନାଶ ।
ଏକେ ରାଜକନ୍ୟା ଯୁବତୀ    ଦୁଜେ ଅପରିଣୀତା
ବିଶେଷେ ତରୁଣ ସୁକବି    ରସପୂର୍ଣ୍ଣ କବିତା,
ନିଭୃତେ ଏକାନ୍ତମନ୍ଦିରେ    ପୁଣି ଦେଇଣ ଶିକ୍ଷା
ଭାବୁଛୁ କି ଯିବେ ନ ନେଇ    ଦୁହେଁ ପୀରତି ଦୀକ୍ଷା ?"

ଶୁଣି ଧୀରେ ମାତ ଭାଷରେ "ଯାହା କହିଲୁ ତୁହି
ଅବିବେକ ପଶୁ ସମାଜେ ସିନା ସୁଗମ ସେହି ।
ବେଦ ଶାସ୍ତ୍ର ଜ୍ଞାନେ ଗରିଷ୍ଠ- ଅଟେ ଯାହାଙ୍କ ମତି,
ସ୍ୱର୍ଗୀୟ ସୁଷମା ରଞ୍ଜିତ ଅଟେ ଯାର ପ୍ରକୃତି,
ସତତ ଷୋଡ଼ଶୀ କବିତା- ରସାସ୍ୱାଦନ କରି,
ଚିଦାନନ୍ଦମୟ ଭୁବନେ ଯେହୁ ସଦା ସଞ୍ଚରି,
ସେ ଆନନ୍ଦମୟ ଧାମରେ କାହିଁ କାମ ଶକତି
ପ୍ରହାରି ବିଶିଖ ହରିବ ଯୁବାଯୁବତୀ ମତି ।"
ଉତ୍ତରଇ ଖାତି ସକାଳେ "ଏ ତ ଶାସ୍ତ୍ର ବାରତା
ବାସ୍ତବ ସଂସାର କର୍ମରେ ମାତ୍ର ହୁଏ ଅନ୍ୟଥା ।
ତରୁଣୀବଦନ ସୁଷମା ଚକ୍ଷୁପଥେ ଯାବତ
ନ ପଡ଼ିଛି ନର ତାବତ ଯୋଗୀଶ୍ୱର ମହତ;
ଯେଉଁଦିନ ବାମା ଲଲାଟ- ପଟେ ସିନ୍ଦୂର ବିନ୍ଦୁ
କଟେ ଅନଙ୍ଗ ସିନ୍ଧୁ । ଶଶୀ ସମ ରାଜେ ନୟନେ
ସତ୍ୟେ ଗାଧିସୁତ, ମେନକାରେ ଋଷ୍ୟଶୃଙ୍ଗ ତପସ୍ୱୀ,
ପରାଶର ମୁନିଦ୍ୱାପରେ, ଶାନ୍ତଦାନ୍ତମନସ୍ୱୀ
ଜଳଫଳମୂଳଆହାରି ଯେବେ କାମବିକଳ
ଘୃତପଯ୍ପମିଷ୍ଟ ଭକ୍ଷୀରେ କହଁ ସଂଶୟ ତୋର ?"
ପୁଣି କହେ ମାତା ସଧୀରେ କ୍ଷଣେ ରହି ମଉନ,
ଏ ମହାପାତକେ ଜଗତ ହେବ କ୍ଷଣକେ ଆନ ।
ଗୁରୁ ପିତା, ଗୁରୁ ଦେବତା ଗୁରୁ ଜ୍ଞାନ ଜନମା,
ଶିଷ୍ୟଶିଷ୍ୟା ସୁତଦୁହିତା ମାତଶାସ୍ତ୍ରେ ବଖାଣି ।
ଏ ପାପ ସନ୍ଦେହ କପାଳେ ମନେ ଚିନ୍ତୁଟରେ ଘାଇ ।
ବସୁନ୍ଧରା ଯିବ ପାତାଳ- ଗର୍ଭେ ପ୍ରଳୟ ହୋଇ" ।

ଶାନ୍ତି ଭଙ୍ଗେ ପୁଣି ସନ୍ଧି ରତେ,  "ନାହିଁ ମହାପାତକ,
ଯାଂବଳେ ପୃଥ୍ୱୀ ଅକାଳେ  ଯିବ ଅନନ୍ତଲୋକ ।
ସଂସାରର ଶାନ୍ତି ଏହି ଠିଁ  ସତ୍ୟ ନତ୍ୟ ପ୍ରତ୍ୟକ୍ଷ;
ବାସ୍ତବ କଥାରେ କପାଇଁ  ସ୍ପରଶିବ ପାତକ ?
ଏଣୁ ଦୂରଦର୍ଶୀ ମହାତ୍ମା  ଶାନ୍ତ ସାଧନ୍ତି କର୍ମ,
କାହିଁ ଶାନ୍ତି କାହିଁ ମାତକ  ଯହିଁ ଯା, ହୁଏ ଧର୍ମ ।
ମୋ ବଗୃରେ କନ୍ତୁ ସେ କଥା,  ନୁହେଁ ରାଜ-ଉଚିତ
ନଯୋଜନ୍ତୁ ଆନ ସୁବୁଦ୍ଧି  ଆଣି ଧରଣୀନାଥ ।"
ମନ୍ତ୍ରି କହେ, "ବାବୁ ନ ଜାଣୁ  ଜ୍ଞାନ ଗାରିମା ଗୁଣ,
କବିନ୍ଦ୍ର ପ୍ରତିଭାବନ୍ତ ସେ  ମହାକବି ବର୍ଣ୍ଣଣ ;
ଯାଂ ଲେଖନୀ ଅଗ୍ରେ ବିନମ୍ରେ  ଉଭା ଦେବୀ ଭାରତୀ,
ସେ ସିନା ତା, ପର ଜଗତେ  ନାହିଁ ଆନ ସୁମତି ।"
ଭଙ୍ଗେ ଶାନ୍ତି ତହୁଁ ଗମ୍ଭୀରେ,  "ତେବେ ବୁଝରେ ଭାଇ !
ଦରଶନ ବିନା କାହାର  ପ୍ରୀତି ଜାତ ନୁହଇ ।
ଯାମିନୀ ପୀରତି ନ କଟେ  ଦେଖି ଦିବସନାଥ,
ଉଷାର ଲୋହିତବସନେ  ଯହୁଁ ରୂପ ଆବୃତ ।
ମାଳତୀ ନ ବରେ ବସନ୍ତେ  ପତି ସେନେହ ଧରି
ପ୍ରଚଣ୍ଡ-ଗ୍ରୀଷମ କମ୍ପଲେ  ମୁଖ ଦେଖି ନ ପାରି ।
ସେ ରୂପେ କରି ହେ ଉପାୟ  ଛଳେ ବଳେ କୌଶଳେ
ପଞ୍ଚବାଣେ ବାଢ଼ ବେଢ଼ ହେ  ଜେମା ପଡ଼ିବା କାଳେ ।"
ଏତେ କହି ଶାନ୍ତି ଉତ୍ଫୁଲ୍ଲେ  ଜମ୍ବୁମାଳୀ ଲମ୍ବାଇ,
ଗୃହୁଁ ଗୃହୁଁ ହୃଦ ଆକାଶେ  ଗଲା କ୍ଷଣେ ମିଳାଇ ।
ବିଷାଦମଳିନମାନସେ  ମନ୍ତ୍ରୀବାଣୀ ମଉନେ,
ରହିଲା ସେକାଳୁ ଗୁପତେ  ଶାସ୍ତ୍ର କୋଣେ, ପୁରାଣେ ।

ଛୁଟିଲା ସରବ-କଳ୍ପନା    ଉଷାତାରକା ସଙ୍ଗେ,
ଫୁଲ୍ଲ ତରୁରେ ଉଠେ ରାବଲେ    ଗୃହକୁକ୍କୁଟ ରଙ୍ଗେ ।
ସେ ଡାକେ ଚେତିଲେ ଶୟନ    ପତିବିରତା-ନାରୀ,
ଅତୃପ୍ତ ମନ୍ମଥ କାନ୍ତଙ୍କ    କରୁ ବାସ ଓଟାର ।
ଭୁଜରୁ ଉଠିଲେ କାର୍ତ୍ତିକ-    ବ୍ରତୀ ବରଯୋଷିତେ,
ରାଧାଦାମୋଦର ପୂଜିବେ    ଯାଇଁ ସ୍ୱର୍ଣ୍ଣ ଘାଟରେ ।
ବାହାରିଲେ ମୁଖ ଲୁଚାଇ    ଶୀତବାସେ ଗୁପତେ,
ବାରାଙ୍ଗନାପୁରୁଁ ରସିକ-    ଶ୍ରେଣୀ ଶଙ୍କିତ ଚିତ୍ତେ ।
ଝଞ୍ଜାନିଳଧ୍ୱସ୍ତ ଲତିକା—    ପ୍ରାୟେ ବାରବନିତା,
ଯେଝାଠାବେ ପଡ଼ି ରହିଲେ    ନିଦ୍ରାବଶେ ଅଚେତା ।
କାହିଁ ଅବା ବିଦ୍ୟାନୁରାଗୀ—    ଶିଷ୍ୟ ଉଠି ଯତନେ,
ଦୀପାଲୋକେ ବସି ଘୋଷଇ    ସନ୍ଧି ସୂତ୍ର ମଉନେ ।

ବିବାହ ମଙ୍ଗଳ-ବିଧାନ    ପ୍ରାୟେ ଉଠିଲା ଗୋଳ,
ହୁଳହୁଳି-ଶଙ୍ଖ-ଶବଦେ    ଦଶ ଦିଗ ଚହଳ ।
ଘୁମୁଣ୍ଡିଆ-ନୀଳ ଆକାଶ    ତାରା-ପୁଷ୍ପ ଖଚିତ,
ଅର୍ଘ୍ୟଥାଳୀ ହସ୍ତେ ଶୋଭନ୍ତି    ଦିବ୍ୟ ଲଳନାବୃତ ।
ହରିଦ୍ରା-ସୌରଭ ଚହଟେ    ଦିଶେ ଦିଶେ ଆମୋଦ,
କୁକ୍କୁଟ ଧଇଲା ଟମକ    ବାଦ୍ୟ ବାୟସ-ରାବ ।
ପାହାନ୍ତି ପବନ ସଧୀରେ    ବାଟ କଢ଼ାଇ ଆଗେ,
ଉଷାରୁଣ ଚତୁର୍ଦ୍ଦୋଳ    ସମ୍ଭାଳିଲା ସରାଗେ ।
ପଛେ ଖଞ୍ଜରୀଟ ଆମନ୍ତ୍ରି    ଆରମ୍ଭିଲେକ ନାଟ,
ନାଟ ନୁହେ ସେହି ପ୍ରତ୍ୟକ୍ଷ    ମାଞ୍ଜୁ-ନଗରୀ-ହାଟ ।
କ୍ରମେ କ୍ରମେ ଲୁପ୍ତ ତାରକା    ଜ୍ୟୋତି ତ୍ରିଯାମା ସଙ୍ଗେ,
ସମ-ଶୋଭିସୁମ ଲୋଟିଲା    ଧୂଳି ଧୂସର ଅଙ୍ଗେ ।

ଲୋଚନ ତାରକା ତେଜନ୍ତି ଜ୍ୟୋତି ତାରିକା ବିନା,
ସମଧର୍ମୀ ସିନା ବୁଝନ୍ତି ସମଧର୍ମୀ ବେଦନା ।
ପରାଚୀ ସୁନ୍ଦରୀ ଶୋଭିଲା ପିନ୍ଧି ଅରୁଣ-ବାସ,
କ୍ରମେ ହେଲା ଦିଗ ନିର୍ମଳ ଶୁଭ୍ର ଧରଣୀ ବେଶ ।
ଏ କାଳେ ଶୁଣିଲେ ସଚିବ- ବର ବାଦ୍ୟୋପବନେ,
କି ଭାବିଲେ ମନେ ସେ କଥା ଏକା ମନ ହିଁ ଜାଣେ ।
ବିଶ୍ୱପତି-ହର ଶଙ୍କର ନାମ ଘୋଷି ବଦନେ,
ଚଳିଗଲେ ଉଠି ଆସନୁ ତଳ ପୁରେ ବହନେ ।
ସାରି ମୁଖ-ଦନ୍ତ ମାର୍ଜନ ସ୍ନାନବିଧି ଆଚରି,
ପୂଜା-ମନ୍ତ୍ର-ଜପ ବିଧାନ- ଶେଷେ ଶିବ ସୁମରି ।
ବାସ ପୁଷ୍ପାଞ୍ଜଳି ଅରପି ଦେଲେ ଶ୍ରଦ୍ଧା ମାନସେ,
ଭୂଷା ପରିଚ୍ଛଦେ ସଜ୍ଜିତ ହେଲେ ସଚିବ-ବେଶେ ।
ଏ ସମୟେ ଭୃତ୍ୟ ପ୍ରବେଶି ନିବେଦିଲା ସମ୍ମୁଖେ,
ସ୍ୱସ୍ତି, ବର୍ଣ୍ଣୋଜ୍ଜ୍ୱଳ ବିପ୍ରେକ ଆସିଛନ୍ତି ସାକ୍ଷାତେ ।
ଦର୍ଭ କମଣ୍ଡଳୁ ହସ୍ତରେ, ଭାଲେ ଚନ୍ଦନଚର୍ଚ୍ଚା,
ମୁଖେ ତ୍ରିଂଶାକ୍ଷରୀ ଗାୟତ୍ରୀ, ଭ୍ରୂ-ଲତା ମୁଦ୍ରିତା,
ବସିଣ ଅଛନ୍ତି ମଣ୍ଡପେ ପଠାଇଲେ ବାରତା,
ଏତେ କହି ଭୃତ୍ୟ ଚଳିଲା ଆଜ୍ଞା କ୍ରମେ ତ୍ୱରିତା ।
ଚଳିଗଲେ ମନ୍ତ୍ରୀପ୍ରବର ଗୃହେ ଦାଣ୍ଡେ ମଣ୍ଡପେ,
ଉଭା ଯହିଁ ବିପ୍ରପ୍ରବର ମଗ୍ନ ଗାୟତ୍ରୀ ଜପେ ।
ମୁଦ୍ରିତ ଯେ ବେନି ନୟନ ସ୍ଥିର ନିଶ୍ଚଳ ଗ୍ରୀବା,
କୃତ୍ତିବାସ ଯୋଗ ସମାଧି ସାଧୁଛନ୍ତି କି ଅବା ?
କିବା କୁଶାସନେ ଆତ୍ମଭୂ ଧ୍ୟାନମଗ୍ନ ନିଶ୍ଚଳେ,
ନାରାୟଣେ ସ୍ତୁତି କରନ୍ତି ବେଦ ହରଣ ଫଳେ ?

ତପ କରନ୍ତି କି କପିଳ ଗୁପ୍ତ ପାତାଳପୁରେ,
ନିମୀଳିତ ବେନି ଲୋଚନ ବ୍ରହ୍ମ ପ୍ରତ୍ୟକ୍ଷ କରେ ?
କ୍ଷଣେ ଗୃହିଁ ମନ୍ତ୍ରୀପ୍ରବର ଚିହ୍ନି ନେଲେକ ମନେ,
ମହାକବୀଶ୍ୱର ବ୍ରାହ୍ମଣ ଉପବିଷ୍ଟ ସେ ସ୍ଥାନେ ।

ବିନୟେ ସମ୍ବୋଧି କହନ୍ତି ନମ୍ର ଭାବେ ବଚନ,
"କି ଉଦ୍ଦେଶ୍ୟେ ବିପ୍ର ଏଠାବେ କଲ ଶୁଭାଗମନ ?
ମୁଦିଅଛ କିପାଁ ନୟନ ମୁଖ ମ୍ଳାନ କିପାଇଁ,
କି ହେଲା ହେ ଦ୍ୱିଜଉତ୍ତମ ! କହ ଫେଡ଼ି ସଂଶଇ ।"

ମନ୍ତ୍ରୀ କଣ୍ଠ ସ୍ୱର ଜାଣିଣ ଯୁବା ବିପ୍ର କହନ୍ତି,
"ସାବଧାନେ ଶୁଣ ସଚିବୋ— ତୁମ ମୋର ଭାରତୀ ।
ବାଲ୍ୟକାଳୁ ପିତୃହୀନ ମୁଁ, ମାତୃ ସୁଖ ନ ଜାଣି,
ଦୁଃଖେ କଟାଇଛି ଜୀବନ ପାଣି-ଫୋଟକା ମଣି ।
କେଉଁ ପୂର୍ବାର୍ଜିତ ପାପରୁ ପୂଜ୍ୟପାଦ ଜନକ,
ଛାଡ଼ିଗଲେ ସ୍ୱର୍ଗେ ଅକାଳେ କୁଷ୍ଠବ୍ୟାଧି-ପୀଡ଼ିତ ।
ସେହିଦିନୁ ପରା ଜୀବନେ ସତ୍ୟ କରିଛି ମୁହିଁ,
କୁଷ୍ଠବ୍ୟାଧିବନ୍ତ ଜନଙ୍କୁ ନେତ୍ରେ ନ ଦେଖିବଇଁ ।
ଯଦି ବା ଦେଖିବି ଅକାଳେ କିବା ଦଇବବଳେ,
ନିରାହାରେ ନେବି ଦିବସ ନିଶି ନ ଶୋଇ ଢାଳେ ।
ମୁଦ୍ରିତ କରିବି ନୟନ ସୂର୍ଯ୍ୟୋଦୟ ଯାବତ,
ନିୟତେ ଗାୟତ୍ରୀ ଜପିବି ଏହା କରିଛି ସତ୍ୟ ।
କି ମୁହୂର୍ତ୍ତେ ଶଯ୍ୟା ତେଜିଲି କାହା ମୁଖ ଅନାଇ,
ଗଙ୍ଗାସ୍ନାନେ ଯାଇଥିଲି ମୁଁ କୁଶ ତଣ୍ଡୁଳ ନେଇ ।

ଫେରିବାର କାଳେ ଦେଖିଲି ତବ ଦୁଆର-ଲଗେ,
କୁଷ୍ଠବ୍ୟାଧିବନ୍ତ ମୂରୁଷେ ଗଲି ମୋ ଦୁରୈବଭଗେ ।
ବସିଲି ମଣ୍ଡପେ ଜପିଲି ପୂତ ଗାୟତ୍ରୀ ମନ୍ତ୍ର,
ପେଷିଲି ବାରତା ଭୂମ୍ପଙ୍କୁ ଜଣାଇଲି ବୃତ୍ତାନ୍ତ ।
ନିଭୃତ ମନ୍ଦିରେ ସଦୟ ଚିତ୍ତେ ମନ୍ତ୍ରୀ-ପ୍ରବର,
ଦେଖାଇ ଦିଅ ହେ ଆଶ୍ରୟ ଯାଉ ଅଷ୍ଟ ପ୍ରହର ।
ଏତିକି କରହେ କରୁଣା ମନେ ଶ୍ରାନ୍ତି ନ ଧରି,
ରଖାଅ ମୋ ସିତ୍ୟ ପ୍ରତିଜ୍ଞା ଏତେ ମାତ୍ର ଗୁହାରି ।”
ମଧ୍ୟାହ୍ନ ଶାରଦ ଗଗନେ ଯଥା ଦୀପ୍ତ ଭାସ୍କର,
କର-ନିକରକୁ ଲୁଚାନ୍ତି ଖଣ୍ଡମେଘ-ପ୍ରକର,
ସେହି ରୂପେ ମନ୍ତ୍ରୀ ବଦନ ତେଜ କଲା ନିଉନ,
ବ୍ରାହ୍ମଣ-ଭାଷଣ-ପ୍ରତିଜ୍ଞା ଇନ୍ଦ୍ରଜାଲ ସମାନ ।
ବିଷଣ୍ଣ ବଦନେ ସଚିବ ଆଦେଶିଲେ ସ୍ୱଭୃତ୍ୟେ
'ଶୂନ୍ୟ କରି ମୋର ଗୁପତ ଗୃହ ଯାଇ ତୁରିତେ'
ଆଜ୍ଞାମାତ୍ରେ ଭୃତ୍ୟ ସକଳ ସବୁ ଯୋଗାଡ଼ କଲେ,
ସାବଧାନେ ଦ୍ୱିଜବରଙ୍କୁ ଗୁପ୍ତ ମନ୍ଦିରେ ନେଲେ ।
ମାନସିକ ଜପ ବିଧାନ — ଶେଷେ ଦିବସ ସାରି,
ପରେଦ୍ୟୁ ଭାଙ୍ଗିଲେ ଆସନ ଦୀର୍ଘ ଯାମିନୀ ହରି ।
ପାରଣାନ୍ତେ ଏକା ଭୁଞ୍ଜିଣ ବସି ଅଛନ୍ତି ବିପ୍ର,
ଏ କାଳେ ମିଳିଲେ ସଚିବ ପାଦ ସଞ୍ଚାରି କ୍ଷିପ୍ର ।
ହର୍ଷ ସମୁଜ୍ଜ୍ୱଳ ବଦନ, ହସ ହସ ଲୋଚନ,
ବାଳ ରବିକର-ରଞ୍ଜିତ ଯଥା ନବ ନଳିନ ।
ପାଶେ ବସି ଧୀରେ ଭାଷନ୍ତି, “ଶୁଣ ହେ କବିବର !
କେମା କାବ୍ୟ ଅଧ୍ୟାପନାକୁ ଯିବ କେଉଁ ପ୍ରକାର ?

ଯେବେଁ ଶ୍ରୀ ଗୁମ୍ଫୁରେ କହିଲ ତୁମ୍ଭ ସତ୍ୟ ପ୍ରତିଜ୍ଞା,
ବିଷାଦ-ବିସ୍ମୟେ ନୃପତି ଦେଲେ ଶ୍ରୀମୁଖେ ଆଜ୍ଞା ।
ସତ୍ୟବ୍ରତ ତୁମ୍ଭେ ଦ୍ୱିଜାତି ସତ୍ୟ-ମହିମା ବନ୍ତ,
ବ୍ୟାଧିବନ୍ତ କନ୍ୟା ଶ୍ରୀଅଙ୍ଗ ଅଛେ କଥା ଗୁପତ ।
ଅସ୍ପଷ୍ଟ କଞ୍ଚିତ ମାତ୍ରକ ନୁହେଁ ଚକ୍ଷୁ-ଗୋଚର,
ଅଲକ୍ଷିତବ୍ୟାଧିଦର୍ଶନେ ନାହିଁ ପାତକ ଘୋର ।
ସତ୍ୟକର୍ତ୍ତବ୍ୟପାଳନେ ସତ୍ୟଧର୍ମରକ୍ଷଣେ,
ଜଣାଇ ଦେଲି ମୁଁ ସେ କଥା ବୁଝି ହୃଗ୍ରର ମନେ ।"

ଆକସ୍ମିକ ଭ୍ରମ ଚଢ଼କେ ଯଥା ଶିଶୁ ହୃଦୟ,
ଚମକିଲେ ତଥା ବ୍ରାହ୍ମଣ ଜାତ-କୁହୁକ-ଭୟ ।
ବିନୟେ ଭାଷନ୍ତି ବଚନ, "ଶୁଣ ମନ୍ତ୍ରୀପ୍ରଧାନ !
ରାଜଜେମା ଅଧ୍ୟାପନାରେ ନାହିଁ ମୋ ପ୍ରୟୋଜନ ।
ନଗରେ ନଗରେ ବୁଲିବି ଭିକ୍ଷାପାତ୍ର ହସ୍ତରେ,
ନ ଦେଖିବି ତେବେ ନୟନେ କୁଷ୍ଠବ୍ୟାଧିବନ୍ତରେ ।
ମେଲାଣି ଦିଅ ହେ ସଚିବ ! ଯିବି ଅପର ଦେଶେ,
ସୁକଲ୍ୟାଣ ବାଞ୍ଛି ତୁମ୍ଭର ପରିବାର ଉଦ୍ଦେଶ୍ୟେ ।"

ଏତେ କହି ଦ୍ୱିଜ ଉଠିଲେ ତର ତର ହୋଇଣ,
ସାନୁନୟେ ମନ୍ତ୍ରୀପ୍ରବର ଭାଷେ ଧୀରେ ବଚନ—
"କୁଷ୍ଠବ୍ୟାଧିବନ୍ତ ଦର୍ଶନେ ଯିନା ସତ୍ୟ ତୁମର,
କାବ୍ୟଶାସ୍ତ୍ର ଅଧ୍ୟାପନେ ତ କିଛି ନ ଯିବ ସରି ।
ତୁମ୍ଭେ ତ ଧୀମନ୍ତ ସୁକବି କବା କହିବି ମୁହିଁ,
ରାଜା ରଖିଛନ୍ତି ଭରସା ତୁମ୍ଭଠାରେ ଗୋସାଇଁ !

ମଧ୍ୟେ ପଞ୍ଚବାସ ବେଡ଼ିଣ          ଟେର୍ ବାନ୍ଧି'ଥା ପରେ
ଯୁଗ୍ମ କୃଷ୍ଣବାସ ଛନ୍ଦରୁ          ଗୁରୁ-ଶିଷ୍ୟା ମଧ୍ୟରେ ।
ନ ଦିଶିବ ମୁଖ କନ୍ୟାର          ନ ଦିଶିବ ଶ୍ରୀଅଙ୍ଗ,
ଯା'ର ଦରଶନେ ତୁମ୍ଭର          ହେବ ପ୍ରତିଜ୍ଞା ଭଙ୍ଗ ।
ଅବରୋଧ ପାର୍ଶ୍ୱେ ଅଦୂରେ          ଗୁପ୍ତଦ୍ୱାର-ପ୍ରାସାଦ,
ବଜ୍ର ଦୁର୍ଗ ବେଷ୍ଟନୀରେ ସେ          ହୋଇ ଅଛି ସୁଦୃଢ଼ ।
ସେ ପ୍ରାସାଦେ ସୁଖେ ରହିବ          ନିଶି, ଦିବସସାରି,
ଜେମା ଆଗମନେ କମ୍ପିବ          ପଞ୍ଚ ସନ୍ଧିତେ ଟେରି ।
ସେ କାଳେ ସେଠାବେ ଆସିଣ          କରି କର୍ତ୍ତବ୍ୟ ଶେଷ,
ହରି ନାମ ଜପି ହରଷେ          କଟାଇବ ଦିବସ ।
ଏହି କଉଶଳେ ନବରେ          ରହ ହେ ବ୍ରହ୍ମଗୁରୁ !
ପୂର୍ଣ୍ଣ ହେଉ ନୃପ ବାସନା          ରହୁ ସତ୍ୟ ତୁମରି ।"
ଏ କଥାରେ ଦେଇ ସମ୍ମତି          ଗଲେ ବ୍ରାହ୍ମଣ ଚଳି,
ସଚିବ-ହୃଦୟ ସାଗର,          ନାଚି ଉଠେ ଉଦ୍‌ବେଳି ।
ଜେମା ଅଙ୍ଗୀକାର-ଉପାୟ          ନରପତି ଶ୍ରୀମୁଖେ,
କହିଛନ୍ତି ବୋଲି ଗୋପନେ          ଚନ୍ଦ୍ରକୂଟବଧିରେ
ଜେମା ପ୍ରତିଜ୍ଞାକୁ ସୁମରି          ମନେ ମନେ ଆନନ୍ଦ,
କୁମୁଦବନେ କି ଶୋଭିଲା          ପୂର୍ଣ୍ଣ ଶରଦ-ଚନ୍ଦ୍ର !
ଯୂଥୀ କଳି ଯଥା ଫୁଟଇ          ନବ ବସନ୍ତାଗମେ,
ବାଳଭାନୁ ଯଥା ଉଦୟେ          ଅମା ନିଶା ଅନ୍ତମେ,
ତଥା ମନ୍ତ୍ରୀ-ହୃଦ ଆକାଶେ          ଅନ୍ଧ-ତମସା ଯାଇ,
ନାଚିଲା ଅରୁଣ କିରଣ          ଜୟ ସଙ୍ଗୀତ ଗାଇ !

---

# ତୃତୀୟ ସର୍ଗ

( ରାଗ—ବଙ୍ଗଳାଶ୍ରୀ )

ହସି ଆସୁଥିଲା କାର୍ତ୍ତିକର ସଞ୍ଜ
ଖସୁଥିଲା ପ୍ରାଚୀ-ଭୂଷା,
ବଣି ଆସୁଥିଲା ଅମା-ମସୀ-ରେଖା
ହସାଇ ବାରୁଣୀ-ଯୋଷା ।
ବହି ଆସୁଥିଲା ମଧୁର ହିଲ୍ଲୋଳ
ଶିଶିରଭରା ତରଙ୍ଗ,
ତହିଁ ମିଶିଥିଲା ବିହଙ୍ଗ-କଣ୍ଠର
କଳ ସଙ୍ଗୀତ ବେହାଗ ।
ଉଡ଼ୁଥିଲେ ପକ୍ଷୀ ଝାଡ଼ୁଥିଲେ ପକ୍ଷ
ହରଷେ ଲଳିତ ରବେ,
ଡାକୁଥିଲେ ସିନା ଭଙ୍ଗୁର ଭବର
ଅନାତ୍ମବୋଧ ମାନବେ ।
"ଅନନ୍ତ ବିଶ୍ୱର ଅନନ୍ତ ସର୍ଜନା
ଅନନ୍ତ ଜୀବନଧାରା,
ହସି ହସି ସର୍ବେ ହୁଅ ଏକଠାବେ
ଦେଖାଇ ପ୍ରେମର ଲୀଳା ।"

ଗାଉଥିଲା ଗଙ୍ଗା ତରଙ୍ଗିତ ସ୍ୱନେ
ସୁମଞ୍ଜୁଳ କଳଗୀତି,
କିବା କହୁଥିଲା ଚଣ୍ଡ ତପନରେ
ଦୁଃଖମୟ ପରିଣତି ?
ଦୂର ଦିଗନ୍ତରୁ ପ୍ରକୃତି ସୁନ୍ଦରୀ
ବିଛାଇ ଲୋହିତ ପଟ,
ଅନ୍ତରୀକ୍ଷ-କୋଳେ ପସରା ମେଲାଇ
ରଚୁଥିଲା ଶୋଭା-ହାଟ ।
ସେ ହାଟ ଗ୍ରାହକ ବାୟା ଅଞ୍ଜନାଭ
ଖଞ୍ଜନ, ଶୁକ, ସାରିକା,
ସୁଷମା ସଉଦା ଧରି ଫେରୁଥିଲେ
ଦଳ ବାନ୍ଧି କେହୁ ଏକା ।
କିବା ଥିଲା ସାଜ ପଟୁଆର ଆଜ
ଯାମିନୀ କାମିନୀ ପାଇଁ,
ବାଜୁଥିଲା ତହିଁ ଷଟ୍‌ପଦ ସଙ୍ଗୀତ
ବିଗଛନ୍ଦ ଧରେ ମହୀ ।
ସେବତୀ ପାଖୁଡ଼ା ବିଞ୍ଚାଇ ଥିଲା କ
ପଦଭ୍ରମଣୋଇ ଭାବି,
ସ୍ୱର୍ଣ୍ଣ କରବୀର ହେମ କର-ଦଣ୍ଡେ
ନାଗେଶ୍ୱର-ଧ୍ୱଜ ଶୋଭି;
ପର ଅନ୍ତରାଳୁ କାକ କୁମ୍ଭାଟୁଆ
ମଙ୍ଗଳ ବାଦ୍ୟ ବଜାଇ,
ଶୁକ ସୂକାହାଳୀ ସାରିକା ମଧୁରୀ
ପାରାବତ ତାଳ ଦେଇ !

ସରସୀ-ନାୟିକା  କୁମୁଦ ମାଳିକା-
କରେ ଝସ-ନେତ୍ର ମେଲି,
ହରିତ ଶୈବାଳ-  ବସନ ବେଢ଼ାଇ
ରଙ୍ଗେ ପିନ୍ଧିଥିଲା ଛଳ ;
ପ୍ରଦୋଷ ସୁନ୍ଦରୀ  ଗୋଷ୍ଠେ ଧୂମରେଖା
ଧରି ବାସ ଧୂପ ଛଳେ,
ଚକ୍ରବାକ ଦ୍ୱନ୍ଦ୍ୱେ  ଜଗାଇଲା ଆଣି
ପଥଧାରେ ଦୂରେ ଦୂରେ ।
ଅସ୍ତରବି-କର  କନକ-ଦୋଳାରେ
ବିଜେ ହେବେ ବୋଲି ବସି,
ଅଦୃଶ୍ୟ ତାରକା-  ପୁଞ୍ଜ କୁସୁମ କି
ନିବିଦରୁ ଥିଲା ଖୋସି !
ପ୍ରାଚୀ ଦିଗ୍‌ବଳୟୁଁ  ଅମାନିଶୀଥିନୀ
ବ୍ରହ୍ମପୁରୀ କଳାପାଟ,
ଉପରାଣେ ଦେଇ  ଜରି, ଫୁଲପୁଞ୍ଜି
ଜଗି ବସିଲାଣି ବାଟ ।
ବାଜିଗଲା ଶଙ୍ଖ  କାହାଳୀ ଦୁନ୍ଦୁଭି
ଦେବମନ୍ଦିରେ ନଗରେ,
ବିଜେ ହେବେ ଆଜ,  ଅମା-କୁଳ-ବଧୂ
ଦୀପାବଳି-କରେ ଧୀରେ ।
ଗଗନେ ଫୁଟିବ  'ତାରକା ଶଶାଙ୍କ'
ବିଞ୍ଚାଇ ସପତ ପୁଞ୍ଜି
ସୃଜିଥିବ ପୁଣି  'ଚନ୍ଦ୍ର ଦୀପାଳୋକ'
ମାରଦ-ବିଗ୍ରହ ରଞ୍ଜି ।

କାଶୀରାଜପୁରେ          ପଡ଼ିଲା ଚହଳ
ଅତିଥି ପୀରତିପାଇଁ,
ସଜାଡ଼ି ରଖିଲେ          'ତାରା ଶଶାଙ୍କ' କୁ
ବଂଶନଳୀରେ ପୂରାଇ ।
ଆଦେଶିଛି ରାଜା          ନଗ୍ର ପୁର ଜନେ
ନଗରେ ନାଗରା ଦେଇ,
'ପ୍ରବେଶିବେ ଯେବେ ,          'ଅମା' ନିଶାସଙ୍ଗେ
କମ୍ପୁ କାଶୀପୁର ଭୂଇଁ ।
ଫୁଟୁ ବାଣ ସଙ୍ଗେ          'ହାବେଳ' ଆକାଶେ
ଚମକ ଉଠୁ ଏ ଧରା,
ଦେଖନ୍ତୁ ଅତିଥି          ବାରାଣସୀ-ଭୂଷ
ଶୁଭ୍ର-ସ୍ୱର୍ଣ୍ଣ-ଦୀପମାଳା ।
ଦେଖନ୍ତୁ ଆକାଶେ          ପିତୃ-ପିତାମହେ
ଦିବ୍ୟ ଆତ୍ମାମାନ ଧରି,
ଉଲ୍ଲସୁ ଜାହ୍ନବୀ-          ବକ୍ଷେ ଦୀପମାଳା
ପାପୀ-ପାପ ଦଗ୍ଧ କରି' ।
ତେଣୁ ପରା ଆଜ          ନଗରେ ନବରେ
ଶୁଭେ ଶୁଭ କୋଳାହଳ,
ଆବାଳବନିତା          ରଙ୍ଗେ ହୋଇ ସଜ
ବୁଲୁଛନ୍ତି ମାଳମାଳ ।
କାହିଁ ନବବାଳା          ସରସୀ ପରାଏ
ପିନ୍ଧି ହଂସଧଳ ଶାଢ଼ୀ
ପ୍ରଳମ୍ବ କୁନ୍ତଳ-          ଶୈବାଳ ଲମ୍ବାଇ
ସଜାଉଛି ସ୍ୱର୍ଣ୍ଣଚୂଡ଼ି ;

ଥରେ ଥରେ ମୁଖ- ପ୍ରତିବିମ୍ବ ଦେଖି
ଦରପଣେ ମନେ-ମନେ,
କେତେ କେତେ ଆଶା- ପ୍ରାସାଦ ଗଢୁଛି
ପ୍ରାଣପ୍ରିୟ ଆଗମନେ ।
କାହିଁ ବା ଯୁବତୀ ରଙ୍ଗେ ବାଛି ବାଛି
ଗୁନ୍ଥି ନାଗେଶ୍ୱରମାଳା,
ପ୍ରାଣେଶ୍ୱର ଗଳେ ଦେବ ସେ ପିନ୍ଧାଇ
ପ୍ରୀତି ଉପହାର୍ ପରା ।
କାହିଁ ଅବା ପ୍ରୌଢ଼ା ଶାମନ୍ତୁଛି ବସି
କଙ୍କତିକା ଧରି ହାତେ ;
ବାନ୍ଧିଦେବ ଶିଶୁ- ଦୁର୍ବିନ୍ତ କୁନ୍ତଳ
ଯିବ ସେ ସଙ୍ଗିମା ସାଥେ ।
କାହିଁ ବୃଦ୍ଧା ସ୍ଥାଳ ଭରୁଛି ମାରବେ
ଫଳପୁଷ୍ପ ଧୂପଧୀପେ,
ନଇବେଦ୍ୟ ଆଜ ଦେବ ସେ ନଶାରେ
ଦ୍ରବ୍ୟ ପୂରୁବ-ପୁରୁଷେ ।
କେହ୍ବ ସୁରଧୂମୀ ପୂଳନୁ ବାହୁଡ଼େ
ମୂଖେ ଗୁଣି ଗଙ୍ଗାସ୍ତବ,
ବିଶ୍ୱନାଥ ସେବା ଆରାଧନା ଅନ୍ତେ
ପୂଜିବ ତା' ଗୃହଦେବ ।
ରାଜ-ଅନ୍ତଃପୁରେ ପୂରୁଛି ଗହଳ
ତର ତର ଦାସ ଦାସୀ,
କେଉଁ ମୁହୂର୍ତ୍ତରେ ନବୀନ ଅତିଥି
ପରବେଶି ଯିବେ ଆସି ।

ଏହିକାଳେ ସନ୍ଧ୍ୟା ମନୋହର ବେଶେ
ଦରଶନ ଦେଇ କ୍ଷଣେ,
ଉଭେଇ ଗଲେ ସେ ଚକ୍ଷୁ ଅନ୍ତରାଳୁ
ଗଗନେ ଅନ୍ତ ଗୋପନେ ।
କହିଦେଲେ କିନ୍ତୁ ରାଜଜେମା କାନେ
'ଗଲି ମୁହିଁ ନବବାଳା !
ସଜ ହୋଇଥିବୁ ନବାଗତ ସଙ୍ଗେ
କରିବାକୁ ତୁ ସଂଖୋଳା ।'
ଯାଇ ନ ଯାଇଛି ଶୁଭିଲି ଶବଦ
ଫୁଟିଲି ବାଣମଣ୍ଡଳୀ,
କମ୍ପିଲି ମେଦିନୀ କମ୍ପେ ଅନ୍ତରୀକ୍ଷ
ସେ କି ଯେ ବାଣ 'ହାବେଳି' ।
ଛୁଟିଲି ଆକାଶେ ସଦ୍ୟ ପ୍ରସ୍ଫୁଟିତ
ନକ୍ଷତ୍ରପୁଞ୍ଜ ଗରଜି,
ସତେ ଛୁଟିଲି କି ନକ୍ଷତ୍ର-ମଣ୍ଡଳୀ
ଭୟେ ନିଜସ୍ଥାନ ତେଜି !
ଆଲୋକ ଉଠିଲି ଅନନ୍ତ ଆକାଶ
'ତାରକା ଶଶାଙ୍କ' ତେଜେ,
ଚନ୍ଦ୍ରମା ସିନା ଆଜି ଲୁଚି ପଳାଇଛି
ନିଶାପତି କାହିଁ ଲାଜେ ।
ଦୀପାବଳି ମାଳା ଝଲସିଲି ପୁରେ
କନକଶୃଙ୍ଖଳା ସରି,
କିବା ବାଣଧୂମ- ମତଙ୍ଗଜ ବନ୍ଧେ
ଦୃଢ଼ସୁବର୍ଣ୍ଣ ଶିଙ୍କୁଳି !

ସ୍ୱରାଜଲା ଯାପେ ପ୍ରାସାଦ ବଡ଼ାଇ
ତା ମଧ୍ୟେ ନବନାଗରୀ,
ବାଳଭାନୁ କରେ ଖଚର୍ଣ ରଞ୍ଜିତ
ରତ୍ନ-ସାନୁ ଆଭା ପର ।
ସ୍ୱର୍ଣ୍ଣଯାପ ଲାଗି ସ୍ୱର୍ଣ୍ଣଲତିକା କି
ସ୍ୱର୍ଣ୍ଣ ପୁଷ୍ପେ ସୁମଣ୍ଡିତ,
ଅବା ଯାପ କରେ ନିଦ୍ରବ ଲଳନା
ସ୍ୱରଗୁଁ ମର୍ତ୍ତ୍ୟେ ଆଗତ ?
ଦେଖୁଥିଲେ ବାମା ସ୍ୱମୁଖପ୍ରତିମା
ଜାହ୍ନବୀ ବିମଳ ଜଳେ,
ଯାପରାଣି ମଧ୍ୟେ ଭୁଲି ମନେ ମନେ
ରୂପରାଶି କୁତୂହଳେ ।
ହସି ଥରେ ଥରେ ପଲ୍ଲବ-ଅଧରେ
ବୁଲାଇ ଚନ୍ଦ୍ରବଦନ !
ନିଜ ରୂପେ ନିଜେ ମଜ୍ଜି ଯାଉଥିଲେ
ପ୍ରେମେ ସେ ମନକୁ ମନ ।
ଏ ସମୟେ ଜେମା ସୁବର୍ଣ୍ଣ-ଜଗତି-
ପ୍ରାନ୍ତେ ଗଣ୍ଡେ ରଖି ପାଣି
ଅନୁଭବୁ ଥିଲା ନଗରୀ ସୁଷମା
ସୌନ୍ଦର୍ଯ୍ୟ-ନଗରୀ-ରାଣୀ ।
ଫୁଟିଥିଲା ଫୁଲ ବାହ୍ୟ ଉପବନେ
ମେଲାଇ ଶୋଭା ପସରା,
ଚହଟାଉ ଥିଲା ସ୍ୱର୍ଗୀୟ ଆମୋଦ
ଶୀତ ବାୟୁ-ଭରା-ଧରା ।

କୁସୁମେ କୁସୁମେ	ଭ୍ରମି ଯାଉଥିଲା
ମକରନ୍ଦ ଗନ୍ଧବହ,
ପରଶେ ପରଶେ	ପୁଲକାଉ ଥିଲା
ଅଜାତ-ରଜାବଗ୍ରହ ।
ମୁହୂର୍ତ୍ତେ କଶୋଣ୍ଟ	ଚପଳ ନୟନ-
ଶଫରୀ-ଯୁଗ ସଲୀଳେ,
ମଜ୍ଜିଗଲା ଯାଇ	ଅଜାଣତେ ତା'ର
ଶୁଭ୍ର ଜାହ୍ନବୀ-ସଲଳେ ।
କ୍ଷଣେକାଳ ବାଳା	ସ୍ତବଧ ଲୋଚନେ
ନରେଖିଗଲା ତା ରୂପ,
ରୂପ ନୁହେଁ ତାହା	ବଧି-ବଧାନର
ଅତୁଳ୍ୟ ଅମୂଲ୍ୟ ଧୂପ ।
ଅର୍ଦ୍ଧେନ୍ଦୁ ଲଲାଟେ	ସିନ୍ଦୂର-ବନ୍ଦୁ ତା,
ବଢ଼ାଇ ଦବ୍ୟ ସୁଷମା,
ଜୂର କରେ ଯୁବା	ନେତ୍ର-ସମ୍ପତ୍ତିକ
ଦବସରେ ସୁଦ୍ଧା ରାମା ।
କୃଷ୍ଣ ସୁକୁଞ୍ଚିତ	କେଶରାଶି ତା'ର
ଧିକ୍କାରୁ ଯମୁନାବାରୀ,
ଶରଣ ପଶିଛୁ	ବଷ୍ଣୁପଦ୍ମ ପାଦେ
ଜୀବରକ୍ଷଣ ମନାସି ।
ଶ୍ରବଣେ ଚଞ୍ଚଳ	ରତ୍ନ-କର୍ଣ୍ଣ-ପୁଷ୍ପ
କନ୍ଧସର ଲମ୍ବମାନ,
ଯୋଗିହୃଦାକାଶ	ଚମକାଏ ଥରେ
ଝଲକେ ଦେଇ ଝୁଲଣ ।

ନାସା କଣ୍ଠେ ବାଧ୍ୟ ରଚିଛି ଅଧରେ
ଅଧର କଣ୍ଠେ ନାସିକା,
ଚିବୁକ ବାଳାର ହଜାଇ ଥୋଇଛି
ରକ୍ତ ଗଣ୍ଡ ରେଖା ଶିଖା ।
ଗୋଲପି ଗଣ୍ଡ ତା' ଯେବେ କେବେ ଥରେ
ଦିଶଇ ସରମବୋଳା,
କୋମଳ ରକତ କୁମୁଦ ପାଖୁଡ଼ା
ତିଳପୁଷ୍ପେ ହୁଏ ଯୋଡ଼ା ।
କଣ୍ଠ ସୁଗଠନ ଅନନ୍ୟ ବାମାର
ବିପଞ୍ଚୀ ମୂର୍ଚ୍ଛନା ସ୍ୱର,
ବସନ୍ତ କୋକିଳ ପାଳ ଧରେ ଆସି
ହେବାକୁ ତା ଅନୁଚର ।
ବକ୍ଷୋଜ ଯୁଗଳ ସୁଧାଭାଣ୍ଡ ସିନା
ଆକାର କଞ୍ଚ-କଳିକା,
ନିର୍ଦ୍ଦୟେ ପ୍ରମଦା ଜାଳୁଥିଲା ହୃଦେ
ଅନଙ୍ଗ-ଜ୍ୱରବର୍ତ୍ତିକା ।
ତଥି ପରେ ଶୋଭେ ଜମ୍ବୁ ନୀଳ ଶାଢ଼ୀ
ଯୁବା ଜନ ପ୍ରାଣଘେନା ।
କାଞ୍ଚନୀ କାଞ୍ଚିଲି ସଙ୍ଗେ ଝଟୁଥିଲା
ମୋତିହାରବକ୍ଷା ରାମା ।
କରେ ଶୁଚ୍ଛି ଚୁଡ଼ି କମରେ କମର—
ବନ୍ଧ ବାଜେଣୀ କଙ୍କିଣୀ
ଏହି ରୂପ ତା'ର ମନ ନୟନକୁ
ଝଟିତିରେ ନେଲି କିଣି ।

ସ୍ତମ୍ଭୀଭୂତ ଜେମା ନିଶ୍ଚଳ ଶ୍ରୀଅଙ୍ଗ
ମୀରବ ନୟନ-ଓଡ଼ାଳା,
ପିଇ ଯାଉଥିଲି ଲାବଣ୍ୟ-ସାଗରୁ
ସୁଧାସର ଭେଳା ଭେଳା ।
ଦେଖି ଅବସର ଲବଙ୍ଗୀ ସଜନି
ପଛଆଡ଼ୁ ଧୀରେ ଆସି,
ଅପଲକ ନେତ୍ରେ ଗୃହିଁ କ୍ଷଣେ କାଳ
ପାଶେ ହେଲା କ ମନାସି ।
ଅଜ୍ଞାତେ ଜେମାର ନୟନ ଗୃପିଣ
ପଗ୍ଚରିଲା ହସି ହସି—
"ତରକ କହ ତ ତରତର କରି
କଏବା ମୁହିଁ ସୁହାସି ?"
ଜାଣି କଣ୍ଠସ୍ୱର କହେ ବରବୋହା,
"ଗୁଡ଼ ଗୁଡ଼ ସଖି ଆଖି !
ଚହ୍ନିଲି ଏଥର ଗୁଡ଼ ଲୋ ନୟନ
ଲବଙ୍ଗୀ ମାର୍ଜାର-ମୁଖୀ ।"
ଏତେ କହି ଜେମା ଫିଟାଇଲେ ଧୀରେ
ସଖୀ-ହାତ ଦୁଇ ହାତେ ।
ଫୁଟନ୍ତା କହ୍ଲାର ନବ କଶଳସ୍ତେ
ମିଶିଲା କ ଅଦଭୁତେ !
ପଗ୍ଚରେ ସଜନି "ସତେ ଜେମାମଣି !
ପ୍ରକୃତ ଶୋଭାଭଣ୍ଡାର
ଜୁରି କରିବାରେ ପେଷିଥିଲୁ କ ଗୋ
ନୟନଯୁଗ-ତସ୍କର ?

ଅବା ଯାଇଥିଲୁ          ପୀରତି-ଜାହ୍ନବୀ
ସଲିଳରେ ଅବଗାହି ?
ଜଳାଞ୍ଜଳି ଦେବୁ          ସଖୀ ସଜନୀଙ୍କୁ
ଭୁଲିଣିଆ କଥା କହି ।"
ଭାଙ୍ଗିଗଲା ନିଦ୍ରା          ଛୁଟିଲା ଜେମାର
ମୋହନ-ରୂପାନୁଭୂତି
ଫିଟିଲା ବନ୍ଧନ,          କଳ୍ପନା-ସାରିକା
ଉଡ଼ି ଖରେ ଗଲା ଲୁଚି ।
"ସତେ ଲୋ ଲବଙ୍ଗି !          ଅନା ଅନା ଥରେ
କାଶୀତଟ-ତଟିମାରେ,
ବଢ଼ଭି ଶିଖରେ          ସ୍ୱର୍ଣ୍ଣଦୀପମାଳା
ତୁ ପୁଣି ତା'ର ମଧରେ ।
ମନୋହର ଗଙ୍ଗା          ମନୋହର ଦୀପ
ମନୋରମ ତୋର ରୂପ,
ସେଥିପାଇଁ ପରା          ଲାଖି ଯାଇଥିଲା
ମୋ ମନ ଚନ୍ଦ୍ର-କଳାପ ।"
ଉତ୍ତରେ ଲବଙ୍ଗୀ          ପରିହାସଛଳେ
"ସତେ ସିନା ଜେମାଦେଇ !
ବେଦ ଶାସ୍ତ୍ର କଥା          ପୁରାଣ ବାରତା
କେବେ କି ଆନ ହୁଅଇ ?
ମହାଜନେ ପରା          ନ ଧରନ୍ତି କେବେ
ସ୍ୱ-ଗୁରୁ-କୃପଣ ନାମ,
ତେଣୁ ଗୋ ପଣ୍ଡିତା,          ଉପଦେଶ କଥା
ପାଳୁଛୁ ଭୁଲି ଆଜନମ ।"

ଜବାଧରୀ ଜେମା        ମନ୍ଦହାସେ କହେ
କର୍ଣ୍ଣଭୂଷଣ କମ୍ପାଇ,
"ଛାଡ଼ ଲୋ ସେକଥା        ମନରୁ ଲବଙ୍ଗି !
ଆଉ କଥା ଏକ କହି !
ଯେ କାଳେ ମୁଦିଲୁ        ନୟନଯୁଗଳ
ଧୀରେ ତୁହି ପଛୁ ଆସି,
ପଡ଼ିଲା ଅତଳେ        ସଡ଼ିଲ ଅନ୍ଧାରେ
ଧଇର୍ଯ୍ୟ ମୋ ଗଲା ଖସି ।
ନ ଦେଖିଲି ଯହୁଁ        ସୁଷମା-ପସରା
ଉଜ୍ଜ୍ୱଳ ଦୀପ-ଆଲୋକ,
ଅଜାଣତ ଭୟେ        ଥରିଲା ଶରୀର
ବୁକୁ ହେଲା ଦକ ଦକ ।
ଯାବତ ଦେଖିଲି        ପୁଣି ନଦୀଧାରେ
ଉଜ୍ଜ୍ୱଳ ଲହରୀମାଳା
ପ୍ରଶାନ୍ତ ପାବନ        ଅନନ୍ତ ଗଗନ
ଲିଭିଗଲା ହୃଦଜ୍ୱାଳା,
କହ କହ ସଖି !        ଜନମକାଳୁଁ ଯେ
ହରାଇଥାଏ ନୟନ,
କପରି କାଟେ ଲୋ        ଜୀବନ-ସରଣୀ
ବ୍ୟର୍ଥ ସିନା ଜନମ !"
ଭାଷେ ସଖୀ ଶୁଣି,        "ଜନ୍ମାନ୍ତରେ ଯେହୁ
କରେ ଗୋ ମହାପାତକ,
ହରି ପର ବିତ୍ତ        କରେ ପର ହିଂସା
ସେ ଲଭେ ଅନ୍ଧ-ଜାତକ ।

ଶିର-ହୀନ ଅଙ୍ଗ, ମନ୍ତ୍ରହୀନ ଦ୍ୱିଜ,
ନୟନବିହୀନ ମୁଖ,
ତେଣୁ ମାତବଦ୍ଧ ପଣ୍ଡିତେ କହନ୍ତି
ଗୃହିବ ନାହିଁ ଏତେକ ।
ସେ ଧନ ପରା ଗୋ ଶିକ୍ଷାଲାଗି ଥିରୁ !
କହିଲୁ ଜନକ ଆଗେ,
ନ ଦେଖିବୁ କେବେ ଜନ୍ମାନ୍ଧ-କନ୍ଦନ
ଜାଣୁ ଜାଣୁ ଭୂମିଭାଗେ ।"
ସେ କାଳେ ବାଳାର ଥିଲା ମନ ଯାଇ
ସ୍ୱର୍ଧୁନୀ-ଗଭୀର ଜଳେ,
ନ ପାରିଲା ଶୁଣି ସଜନୀର ବାଣୀ
ଉତ୍ତରେ ଆନ ପ୍ରକାରେ ।
ଦେଖିଲେ ସଜନ, "କାର୍ତ୍ତିକ ରଜନୀ
ଘରେ ଘରେ ଦୀପାବଳି,
ଫୁଟେ ବାଣରାଜି ଗଗନେ ବିରାଜି
ଉଠେ ଚନ୍ଦ୍ର ଧୂପ ଜଳି ।
କହ କହ ସଖି ! କପରି ଦେଖୁ ତୁ
ମନୋରମ କାଶୀପୁର,
ଲେଖିଣ କବିତା ଗାଆନ୍ତି ଗୀତିକା
ମନୁଁ ହେଉ କ୍ଳାନ୍ତ ଦୂର ।"
ଅଦଭୁତେ ସଖୀ- ଭ୍ରୂଲତା ଉଠିଲା
ଲଲାଟେ ଯାଇ ସତ୍ୱର,
ହସିଲା ହସିଲ "ଶୁଣ ରାଜଜେମା !
ପଡ଼ି ନାହିଁ ଅଳଙ୍କାର ।

ଦେଖିନାହିଁ ଶାସ୍ତ୍ର ମୀମାଂସା-ଦର୍ଶନ
ନୁହଇ ଜନମୁଁ କବି,
କାବ୍ୟ କି ରଚିବି କବିତା ଲେଖିବି
ମୁଖେ ଗାଇ ଶୁଣାଇବି !
ଶିଖିନାହିଁ ପାଠ ଗୁରୁମୁଖୁଁ ବନେ
ଧରି ନାହିଁ ପୋଥି ହାତେ,
ହୋଇବି ଯଦି ମୁଁ କାବ୍ୟ-ବିନୋଦିନୀ
କି କରିବେ ସୁପଣ୍ଡିତେ ?"
ପଦକରେ ବାମା ଆନନ ମଣ୍ଡଳ
ଘୋଟିଲା ବିଷାଦ-ଛାୟା,
ପ୍ରଦୀପ ଲିଭିଲେ ଭବନ ଗରଭେ
ଘୋଟେ ଯଥା ତମଛାୟା ।
କ୍ଷଣେ ପରେ ଜେମା ଦୀର୍ଘ ଶ୍ୱାସ ତେଜି
କହେ ଲବଙ୍ଗୀ ପୁରତେ,
"ଶୁଣ ଲୋ ସଜନି ! ବିଫଳେ ଜନମ
ଯିବ କିନା ଏ ଜଗତେ !
ବୀଜ ଆରୋପିଲି ଅଙ୍କୁରିଲା ବୃକ୍ଷ
କାଳେ ହେଲା ମହାଦ୍ରୁମ,
ଫୁଲ ନ ଫୁଟିଲା ଫଳ ନ ଫଳିଲା
ପୂର୍ବସଞ୍ଚିତ କର୍ମ ।
କେଉଁ ଭାଗ୍ୟେ ହେଲି ରାଜକୁଳେ ଜନ୍ମ
କଲି ବିଦ୍ୟା ଅଧ୍ୟୟନ,
ଷୋଡ଼ଶ ବୟସେ ସମାପନ କଲି
ସ୍ମୃତି ଶାସ୍ତ୍ର ବ୍ୟାକରଣ ।

ଝଡ଼ିଙ୍କ ଦର୍ଶନ        ସାଧି କଲି କଷ୍ଟେ
ହେଲି ସନ୍ତ୍ରିତେଂଗଚନ,
ତଥାପି ଲବଙ୍ଗି        ନ ଜାଣିଲ ବଚନେ
କବିତା-ରସାସ୍ୱାଦନ ।
କି କରିବି କହ        ପରାଣ-ସଙ୍ଗିନି !
କହ କି ଉପାୟ ଥିଲେ,
କବିତା ଲେଖିବି        କାବ୍ୟ ବିରଚିବି
ଗାଇବି ଶୁଣିବ ଥରେ ।”
ଏ ସମୟେ ଦାସୀ        ଜଣାଇଲା ଆସି
ବିଜେ ହେଲେ ମହାରାଜା,
ଶଶବ୍ୟସ୍ତେ ବାସ        ସଜାଡ଼ି ପିନ୍ଧିଲା
ସମ୍ମୁଖରେ ହେବାକୁ ଉଭା ।
ପ୍ରବେଶି ନୃମଣି        ଜାଣିଲେ କନ୍ୟାର
ମୁଖ ଦେଖି ହୃଦବ୍ୟଥା,
କୋମଳେ ଆଶ୍ୱାସି        ଜିଜ୍ଞାସିଲେ ତା’ର
ମରମ-ଗୁପତ କଥା ।
ମଉନେ ରହନ୍ତେ        ଲଜ୍ଜାଶୀଳା ବାଳା
ଲବଙ୍ଗୀ କହିଲା ହସି,
କବିତା ଶିକ୍ଷଣେ        କାବ୍ୟ ବିରଚନେ
ରହିଛି କେମା ମନାସି ।
ହରଷେ ନୃପତି        ଆଜ୍ଞା ଦେଲେ ହସି
“ଏ ଗୁରୁପାଇଁ ଭାବନା,
କାଲଠାରୁ ପରା        କରାଇଛି ପୂର୍ଣ୍ଣ
ଯାହା ତୋ ମନକାମନା ।

ଆଣିଛୁ ନମନ୍ତି              ସୁଧୀ ଶିରୋମଣି
ତରୁଣ  କବିକେଶରୀ,
ନାଦ ଶୁଣି ଯା'ର              ବୁଧ-ଦ୍ୱୀପପୁଞ୍ଜ
କେ କାହିଁ ଲୁଚନ୍ତ ଡରି ।
ଗୁଣଙ୍କ ସୁନ୍ଦରୀ              କବିତା ନାଗରୀ
ଯା' ମୋହନରୂପ ଦେଖି,
ମୁରୁଛି ନ ପାରି              ରହିଛି ପୁରତେ
ପିଛୁଡ଼ି ନ ପାରି ଆଖି;
କିନ୍ତୁ ସ୍ନେହଶୀଳା              ବାଳା ତୁ ଶୁଣରେ
ଅବଧି ବିଧି-ବିଧାନ,
କମଳେ କଣ୍ଟକ              ଶଶାଙ୍କେ କଳଙ୍କ
ମହାସାଗରେ ଲବଣ ।
ତଥା କବିବର-              ପ୍ରଶସ୍ତ-ଲପନେ
ନାହିଁ ଲୋଚନଯୁଗଳ,
ରବି ଶଶି ବିନେ              ଅନ୍ଧକାର ଯଥା
ଦିଶେ ଗଗନ-ମଣ୍ଡଳ ।
ଉପସର୍ଗାଗତ              ଅଟେ  ସେ ବେଦନା
ନୁହନ୍ତ ଜନ୍ମାନ୍ଧ ତାଳେ,
କି ବିଗୁର ଏବେ              କରୁ ମନେ ଜେମା
ଦେବା ଶୁଭ ପ୍ରାତଃକାଳେ ।"
ଶ୍ରବଣେ ବାଳାର              ମ୍ଳାନ ହେଲା ମୁଖ
କାନ୍ତିହୀନ ଗଣ୍ଡଦେଶ,
ସୁଧାଂଶୁମଣ୍ଡଳେ              ଲେପିଲା କି କେହୁ
ସୁଧାମିଶା ପାରଦରସ !

କଣ୍ଠ ଗଦ-ଗଦ ନ ପାରଇ ଭଷି
ଅସ୍ତି ନାସ୍ତି ବାଣୀ ଦୁଇ,
ଦେଖି ଜେମା ସ୍ଥିତ ବୋଲନ୍ତି ଭୂପତି
"ଶୋଚନା ନ କର ତୁହିଁ;
ମନେ ଅଛୁ ମାଆ ସେ ଦିନ ପ୍ରତିଜ୍ଞା
ନ ଦେଖିବୁ ପର ଅଙ୍ଗ,
ତେଣୁ ମନ୍ତ୍ରୀ ସଙ୍ଗେ ଫାନ୍ଦେକି ପାତିଛୁ
ନୁହେଁ ଯଥା ସତ୍ୟଭଙ୍ଗ ।
ଆଦ୍ୟେ ପଛବାସ ମଧ୍ୟେ ଠେସ୍ ଭଡ଼
ତଥି ପୁଣି କୃଷ୍ଣପଟ,
ଦୁହେଁ ଦୁଇ ପାର୍ଶ୍ୱେ ବସି ଦ୍ଵଜେମାମଣି !
ପଢ଼ୁଥିବୁ ସିନା ପାଠ ।
ତାଙ୍କୁ କପାଁ ତୁହି ଦେଖିବୁ ନୟନେ ?
ସେ କପାଁ ଦେଖିବେ ତୋତେ ?
ଯୋଖା କାର୍ଯ୍ୟ ଶେଷେ ଫେରିବ ସଦନେ
ମାନ ରଖିଥିବୁ ଚତ୍ତେ ।
ଯାଆ ଜେମା ପୁରେ ମଶୋହ୍ୱ-ମନ୍ଦରେ
ଆଙ୍କ ପର ଧାପାବଳ,
ଭୋଜନାନ୍ତେ ବସି ଦେଖିବୁ ଚକ୍ଷୁରେ
ଚନ୍ଦ୍ରଧାମ ବଂଶ-ମୂଳ ।
ଏତେ କହି ରାଜା ଚଳିଲେ ସ୍ୱପୁରେ
ପଛେ ପଛେ ସଖୀ ଦୁଇ,
ବଧି ପଛେ କବା ଲକ୍ଷ୍ମୀ ସରସ୍ୱତି
କହିଲ ପଦଣ୍ଡ-ମଣୋଇ ?

---

# ଚତୁର୍ଥ ସର୍ଗ

( ରାଗ—ଚୋଖି )

ଶୁଭେ ପାଇଲା ଶର୍ବରୀ ବାଜେ ମଙ୍ଗଳ ମଧୁର
ଜନକୋଳାହଳ ପୂରି ରାଜନବରେ,
ଭୂସୁରେ ମଙ୍ଗଳାଷ୍ଟକ ପଢ଼ି ଗଣନ୍ତି ଜାତକ
ପୂର୍ଣ୍ଣକୁମ୍ଭ ଦଧି ମତ୍ସ୍ୟ ଶୋଭେ ଦୁଆରେ,
ନୃତ୍ୟ କଲେ ବାରବନିତା,
ହର୍ଷେ ହୁଳହୁଳି ଦେଲେ ବରବନିତା ।

ଅବରୋଧ ପରିଜନ କେ ବସି ଘୋରେ ଚନ୍ଦନ
କେ ଗୁନ୍ଥେ ମାଳା ସୁଷମ ଦେବ ଷମାରେ,
କେହୁ ଫିଟାଇ ପେଟିକା ବାଛଇ ଦିବ୍ୟଶାଟିକା
ରମଣୀରେ ରାଜଟିକା ଦେବ ଜେମାରେ
ସଂପୁଟକେ ଭରି ସିନ୍ଦୂର,
ଉଭା କେ ରାମା ଫଳମ୍ବ ଲତା ପ୍ରକାର ।

ଧରି କେ ଗଜ-କଙ୍କତ ଶାମଳେ କୁନ୍ତଳତତି
ରାହୁସ୍ପୃଷ୍ଟ ନିଶାପତି କରେ କି ଗତି ?
ବନ୍ୟା ଉପଦ୍ରବ କାଳେ ମହେନ୍ଦ୍ରତନୟା-ଜଳେ
କି ଅବା ବନ୍ଧନ ଚଳେ ହୁଏ ପ୍ରଶାନ୍ତ

ଘେନ କେନ୍ହ ଅଙ୍ଗଭୂଷଣ,
ପରଦ୍ୱାସେ କରେ ଜେମା ଚତ୍ତ୍ୱହରଣ ।

ସତରେ ନବଛଇଳା          ତୋ ତନୁନାଟିକା ପରା
ରଙ୍ଗେ ସୂତ୍ରଧର ବନ୍ଧ ଦିଶୁ ଭୁ ଶୋଭା,
ନଟୀ ବାଜେଣୀ କଙ୍କିଣୀ          ଅଙ୍କେ ସୁମନୋହାରଣୀ
ସୁକାନ୍ତ-ନାୟିକା ପୁଣି ନୟନଲୋଭା;
ପ୍ରଭା ବିଭା ଦୁଇ ସଜନୀ,
ସୁଷମା ଅଛଇ ସିନା ତା ସପତଣୀ ।

ନାୟକ ତା ଫୁଲଶର          ଧରି କର-କଞ୍ଜ-ଶର
ଭ୍ରୂଲତା ଗୃପସୁନ୍ଦର ଗରବଙ୍କର,
ଗଣ୍ଡ ବିଦୂଷକ ଭୁଲ          ଫୁଲି ଦିଶଇ ଭୁନ୍ଦଳ
ଚମତ୍କାର ବିପ୍ରଲମ୍ଭ ରସ ଶୃଙ୍ଗାର,
ତୁ ତ ଅଟୁ ନବନାଟିକା,
କି କବିତା ଶିଖିଚୁ ରେ ପ୍ରେମକଳିକା ?

କେ ବୋଲେ ତୁ ଅଳଙ୍କାର-          ପରା ଦିଶୁ ମନୋହର
ଲୁପ୍ତୋପମା ଅଳଙ୍କାର ବନ୍ଧ ନବୀନା !
ନବରସଗୁଣାବଳୀ          ଦୋଷାବଳିକେଶା ବାଳୀ
ସୁକାବ୍ୟ ଲକ୍ଷଣେ ମିଳି ଦିଶୁ ଶୋଭନା,
ଭାବ-ହାବ-ବିଭ୍ରମବତୀ,
ଅଳଙ୍କାରେ କି ହେବ ତୋ କନ୍ଦର୍ପସୁବତି !

କୁଚ ଭୂଧର-ସୁନ୍ଦର	ବାଳ-ଭାସ୍କର ସିନ୍ଦୂର
ହାସ ନିଶାକର-କର ବାସ ବସନ୍ତ,
ଶ୍ରୀଅଙ୍ଗ କାମସରସୀ	ଇନ୍ଦ୍ରିୟକେଳି-ଲାଳସୀ
ଖେଳୁଥାନ୍ତି ରସି ରସି ନିଶି ପ୍ରଭାତ,
ଏ ସବୁ ତ କାବ୍ୟବର୍ଣ୍ଣନ,
ତୁମ୍ଭ କି କାବ୍ୟପଢ଼ିବୁ ବାଳା ରତନ ?

ଏମନ୍ତରୂପେ ପରସ୍ପରେ	ହାସ ପରିହାସ ଗିରେ
କେମା ବେଶ କରାଇଲେ ଉତ୍ଫୁଲ୍ଲ ମନେ,
କାଛୁ ବାସ ପିନ୍ଧାଇଣ	କେଶେ କୁସୁମ ଭରଣ
ଆଗେ ଥୋଇଁ ଦରପଣ ଅତି ଯତନେ,
ଦେଖି ଗେଲେ ବୋଲେ ତରୁଣୀ
"ବରବେଶେ ସଜାଇଲେ କମ୍ପା ସଜନି ?

କପାଳେ ଚନ୍ଦନପାଟି	ହଳଦିବସନ୍ତ ଶାଟୀ
ବାହେ ବାନ୍ଧିଛ ବାହୁଟୀ ମସ୍ତକେ ଝରା,
ବସନ ଭିଡ଼ିଛ କାଛୁ	ଘୋର କି ସଂଗ୍ରାମ ଇଚ୍ଛି
ବେଗେ ଗରଜ ଗରଜ ଆସିଲା ପରା,
ଆଉ କିଛୁ କିଛୁ ରହିଲା
ପୂର୍ଣ୍ଣ କରିଦିଅ ବେଗେ ଆସି ଛଇଳା ।"

ତହୁଁ ଲବଙ୍ଗୀ ସଜନୀ	ବୋଲେ ଶୁଣ କେମାମଣି
କବିତା-ବର-ବର୍ଣ୍ଣିମା ବରଣ ଘେନ,
ହସି ଲମ୍ଭାଇବ ଯେବେ	ମନେ ପକାଇବୁ ତେବେ
ପରିହାସ ସିନା ଏବେ କରୁ ନ ଜାଣି

ଏତେ କହି ସଙ୍ଗିନୀବ୍ରାତ,
ଯାଇ ଜଣାଇଲେ ରାଣୀ ଆଗେ ସମସ୍ତ ।

ବନ୍ଦାଣ ରତନଥାଳୀ- ହସ୍ତେ ରାଣୀ ଗଲେ ଚଳି
ବନ୍ଦାଇଲେ ରାଜବାଳୀ ସରବେ ମିଳି,
ନାରୀ ଦେଲେ ହୁଳହୁଳି ବାଜିଲା ଶିଙ୍ଗା କାହାଳୀ
ଇଷ୍ଟଦେବୀ ପୁରେ ଚଳି ସେ ସର୍ବ୍ବାଳୀ
ବର ମନାସିଲେ ମାନସେ,
ପୂରୁ ଜେମା-ମନୋବାଞ୍ଛା କବଭା-ରସେ ।

ବାହୁଡ଼ିଣ ରସାଳସା ପୁସ୍ତକହସ୍ତେ ସୁଭୂଷା
ଧୀରେ ଧୀରେ ପରବେଶ ପୁରୁ ସଦନେ;
ଭାରତୀ ବିଶ୍ୱବନ୍ଦିତା ସଙ୍ଗୀତଶାସ୍ତ୍ରମଣ୍ଡିତା
ଚଳନ୍ତି ବୈକୁଣ୍ଠେ ଯଥା ବିଷ୍ଣୁ ଭବନେ,
କିବା ବିଦ୍ୟା ପଢ଼ି କମଳା
ଭାଙ୍ଗି ଦେବେ ସପତଣୀ ଗରବଲୀଳା !

ଉପବେଶୁଁ ପୀଠାସନେ କମ୍ପିଲା ପଠ ସଘନେ
ତତ୍ତ୍ୱମନ୍ତ ଦରଶନେ ପାପ ଯେସନେ,
ଆସିଣ ସୁଧୀପ୍ରବର ବିରାଜିଲେ ଆସ୍ଥାନର
ମୋହ ଅନ୍ତରିଲେ ବିବେକର ସମାନେ,
ବିଘ୍ନେଶ୍ୱର ସୁମରି ଆଦ୍ୟେ
ଉଚ୍ଚାରିଲେ ମନ୍ତ୍ର କଣ୍ଠେ ଓଁକାରନାଦେ ।

ନବୀନ ନୀରଦ-ସ୍ୱନେ ମୟୂରୀ ଯେସନେ ବନେ
ନାଚଇ ହରଷ ମନେ ପୁଚ୍ଛ ବିସ୍ତାରି,
କଳିନ୍ଦଜାର ପୁଳିନେ ମୋହନ ମୁରଲୀସ୍ୱନେ

ଅଧୀର ହୁଅନ୍ତ ଯେସନେ ଗୋପ-ନାଗରୀ;
ତେସନେ ନୃପତି-କୁମାରୀ
ଷଣେ ରହିଲା ମଉନେ ଧଇର୍ଯ୍ୟ ହାରି ।

ବାଳା ମଉନ ଦେଖିଣ ବୋଲନ୍ତ ତହୁଁ ବହ୍ମଣ
କର ଜେମା ଉଚ୍ଚାରଣ ମୁଖେ ଓଁ କାର,
ଓଁ କାର ବୀଜ ଅଷର ସ୍ୱୟମ୍ଭୂ-ହରି-ଶଙ୍କର
ମଧ୍ୟେ ତା ସଚରାଚର ଅଛୁ ନିକର,
ଶୁଣି ଲଜେ ଧୀରେ ଉଚ୍ଚାରି
ଗାନ୍ଧର୍ବୀ ଗାନ୍ଧର୍ବୀ-ବୀଣା ଦେଲା ଝଙ୍କାରି ।

ରଜନୀରେ ରହି ଦୂରେ ରଥାଙ୍ଗ ରଥାଙ୍ଗୀସ୍ୱରେ
ଛନ ଛନ ମନେ ଯଥା ଛାଡ଼ଇ ଶ୍ୱାସ,
ନିଶାକାଳେ ବେଶ୍ୟାପୁରେ କପାଟ-ରୁଦ୍ଧ ଦୁଆରେ
କଳସଙ୍ଗୀତେ ଯେସନ ରସିକ ପୁଂସ,
ସେ ରୂପେ ତରୁଣ ଯୁବକ
ସ୍ତବଧେ ରହିଲେ ଷଣେ କି କଥା ଭାବ ।

ସେକାଳେ କାମ-ରାଜନ ମୋହପଟ୍ଟିକା ମଧ୍ୟେଣ
ଜଗିଲା କରି ଆସ୍ଥାନ ଗୁପ୍ତ ସଜାଡ଼ି,
ସାଧିବ ବୋଲି ବଇରି ଭାଳି ଶଙ୍କର-ଗଉରୀ
ବାଛୁ ଫୁଲଶର ବନ୍ଧେ ଆକର୍ଣ୍ଣ ଭିଡ଼ି,
ସେ ତ ଅଟେ ମୋହନା ଶର,
ତା ମୁଖୁଁ ଉବୁଟି ଯିବ ନର କି ଛାର ?

ଶଶାଙ୍କ ପୂରୁବ କାଳେ   ଶିକ୍ଷାର୍ଥୀ ଗୁରୁଦୁଆରେ
ଆସକତ ଯେଉଁ ଶରେ ଗୁରୁପ୍ରିୟାରେ,
ସୃଷ୍ଟି ବିରଚନା ବେଳେ   କନ୍ୟାରୂପ ଦେଖି ଭୋଳେ
ଯେ ନାରାଚେ ପିତାମହ ବଶ ହୋଇଲେ;
ସେ ବିଶିଖେ ଯୁବା-ଯୁବତୀ-
ହୃଦେ ଜାତ କରାଇଲା ଅଦୃଷ୍ଟ ପ୍ରୀତି ।

ଏ ରୂପେ ଆଦ୍ୟ ଦିବସ   ବିଦ୍ୟା ଶିକ୍ଷା ହେଲା ଶେଷ
କଟି ମାସ ପରେ ମାସ   ଶିଶିର ଶେଷ,
ଗୁରୁ ଦିଅନ୍ତି କ ଶିକ୍ଷା   ଜାଣେ ସେହି କୁମାରିକା
ଗୁରୁ ଘେନନ୍ତି କ ଦୀକ୍ଷା ବୁଝେ ମାନସ;
ଛନ ଛନ ଦୁହିଙ୍କ ମନ
ବିଷାଦେ କରନ୍ତି ଦିବା ନିଶି ଯାପନ ।

ମହାପୟୋଧି ଉଦର   ଜାଳ ବଡ଼ବା ଅନଳ
ନାଶଇ ଯଥା କାଲାଳ ଅତଳ ତଳେ;
ଆବୃତ ତୁଷ-ଅନଳ   ଦିଶି ନୟନ ମଞ୍ଜୁଳ
ଯେରୂପେ ଦାବ ଅନଳ ଜ୍ୱାଳାରୁ ବଳେ;
ସେହିରୂପେ ହେଲା ଅବଳା,
ଅନୁଭବୀ ବିନା କେ ବୁଝିବ ତା' ଜ୍ୱାଳା ।

ଦିନେ ଦିନେ କୁମାରିକା   ପ୍ରବେଶି ପୁଷ୍ପବାଟିକା
ନିଭୃତ ମଣ୍ଡପେ ବସି ଚିନ୍ତଇ ଏକା,
ନିଶାକାଳ ସୁପଲ୍ୟଙ୍କେ   ବସି ଯାପେ ଅପଲକେ
ଶୟନେ ସ୍ୱପନ ଦେଖେ ନବ-ପ୍ରେମିକା,

କି ହୁଏ ତା', ନ ଜାଣେ ସେହି,
ଦରଶନ ବିନା କିଛି ହୁଏ ତ ନାହିଁ ।

ଥରେ ଥରେ ରସବନ୍ତି ସରାଗେ ବଜାଇ ମନ୍ତି
କଳପେ-ଗୁରୁମୂରତି ତଳପେ ବସି,
ନନ୍ଦ ବିଧି ସରଜନା ଆଶ୍ଚର୍ଯ୍ୟ ନୟନ ବିନା
ତିନ୍ତାଏ ଗଣ୍ଡ ଲଳନା ଅଶ୍ରୁ ବରଷି;
ଏ ଭାବେ ସେ ରାଜ-ଦୁହିତା,
ଦିନ ନେଲା ମନେ ମାରି ମନର କଥା ।

———

# ପଞ୍ଚମ ସର୍ଗ

( ରାଗ—ନଟବାଣୀ )

ଶୁଭ ପରିଣୟ  ପଦ୍ମମା ସଙ୍ଗତେ
ବିରଚିବା ଆଶେ  ସରସୀ-ଉପାନ୍ତେ;
ହିମ ଶେଷେ ମଞ୍ଜୁ  ଗୋଧୂଳି ବେଳାରେ
ବିଜେ ଋତୁରାଜ  ମଳୟ-ଦୋଳାରେ ।
ଗହଣେ ଆସନ୍ତି  ମନୋଜ-ଭୂପତି
ବନ୍ଦୀ ପରଭୃତେ  ଆରମ୍ଭନ୍ତି ସ୍ତୁତି,
ମଧୁପ-ଶଙ୍ଖୁଆ  ବାଉଥାଏ ଶଙ୍ଖ
ବେଦଧ୍ୱନି କରେ  ଉଚ୍ଚେ ଦ୍ୱିଜ ଶୁକ,
ଶାରିକା-ନାୟିକା  ଦିଏ ହୁଳହୁଳି
ଜନକ ମନ୍ଦିରେ  ସରୋଜିନୀ-ବାଳୀ
ଲୋହିତ-ବସନ  ଦେଇ ଉପରଣେ
ବସିଥିଲା ଜଗି  ଉତ୍ସୁକ ନୟନେ,
କର-ପଲ୍ଲବରେ  କଜ୍ଜଳ ପତ୍ରିକା
ସଙ୍ଗେ ଥିଲେ ସଖୀ  ମଲ୍ଲିକା ଯୂଥିକା
ପ୍ରକୃତି ସୁନ୍ଦରୀ  ରଚି ଚନ୍ଦ୍ରାତପ
ଊର୍ଦ୍ଧ୍ୱେ ବାନ୍ଧିଥିଲା  ମିଶାଇ ଆତପ
ରଚିଥିଲା ଜନେ  ଇନ୍ଦ୍ରମାଳ ବେଦୀ
ବସାଇବଂ ବୋଲି  ପଣ୍ଡିତ ସୁବୁଦ୍ଧି ।

ଦୂରଦେଶୁ ଦ୍ୱିଜ କରି ଆବାହନ
ଅରପିଲ୍ ହରଷେ ପୂଜନ-ଆସନ
ଦରଶକ ଲୋକ ଦୂରେ ହୋଇ ଉଭା
ଉଲ୍ଲସିତ ମନେ ଦେଖେ ବଡ଼ ସଭା,
ଲୋଭି ମୂର୍ଖବନ୍ଧୁ ପରାଏ ଶାମଳ,
ଚାହିଁଥାଏ ରହି ସରସୀ-ସଲିଳ;
ନାଚନ୍ତି ଗଣିକା- ପ୍ରାୟେ ମରାଳିକା,
କେବେ ଯୂଥ ଯୂଥ କେବେ ପୁଣି ଏକା ।
ନାଗର-ଖଞ୍ଜନ ମୁକୁତାର ମାଳା
ଧରି ଦରଶାଏ କେତେ ରଙ୍ଗେ ଲୀଳା ;
ଏ କି ଅଦ୍ଭୁତ ଅକାଳ-ଚଡ଼କ,
ମ୍ଳାନ ହେଲା କିପାଁ ସରୋଜମା ମୁଖ !
ମଉଳିଗଲା ତା' ଉପରାଣ ପାଠ
ପଡ଼ିଗଲା ଝଡ଼ି କନକ-ମୁକୁଟ ।
ଭୟେ ସର୍ବେ ତହୁଁ ହେଲେ ଥର ଥର,
ବାତ-ଘାତେ ଯଥା କଦଳୀପତର ।
କେହି ନ ଜାଣନ୍ତି କି ହେଲା ତାହାର,
ପଳାଇଲେ କନ୍ତୁ ଯେ ଯାହାର ଘର ।
ଦ୍ୱିଜଚନ୍ଦ୍ର ପୁଣି ପଦ୍ମା-ଜନକ
ଚାହିଁ ଥିଲେ ରହି ଏକଙ୍କୁ ଆରେକ ।
କ୍ଷଣେ ରହି ପଚା- ରିଲେ କଞ୍ଜପିତା
କି ହେଲା ହେ, ଦ୍ୱିଜ କହ ଏ ବାରତା ।
ଯୋଗାସନେ ବସି ଦ୍ୱିଜଚନ୍ଦ୍ର କହି
"କିଛି ନ ଜାଣୁ ତୁ କନ୍ୟାପିତା ହୋଇ ।

ଯା'ରେ ଯୋଜ କରି ଯୋଗୀଲୁ ପୁଷ୍ପାପତି
ଚନ୍ଦ୍ରସଙ୍ଗେ ତା'ର ଅଭେଦ ପିରତି ।
ସ୍ତ୍ରୀସ୍ପୃହରେ ଆନ ନେବା ଦେଖି ହର
କ୍ରୋଧେ ଭକ୍ତ ହେଲେ ଦଗ୍ଧ ସ୍ୱର୍ଗ ପର ।
ହୃଦୟେ ତ୍ରିପୁର ଦେଖି ଆନେ ସ୍ୱବ
ପୁଷ୍ପିତ ସଂସାରେ କେ ପୁଣି ସମ୍ଭବ !
ପ୍ରେମ୍ଭ ମନୁଷ୍ୟଙ୍କ କରଣ ବଗିଁହ
ଜଗ୍ରାଜ୍ଞ ବ୍ରତରେ ଗମିଲେ ଆଳୟ,
[illegible] ଆନ ସେନାପତି,
[illegible] ରଖିବେ ଖାରତି ।
ଏବେ ଚୋ ଦୁହିତା ଦେଖି କାନ୍ତ-କୃତ୍ୟ
ଲଜ୍ଜା-ବିନ୍ଦୁଁ [illegible] ଜୀବନ ତ୍ୟକତ ।
[illegible] ଶିଳା ନ ରଖନ୍ତି କେବେ
[illegible] ପୁଣି ଘୃତ ମାତବଦେ,
ଦେଖି ଦେଖି ଏବେ ପୂର୍ବାଚଳ ଭେଦ
ଜାଗେ ଦ୍ୱିଜପତି ଆସିଲେ ଗରଜ ।
ନାହିଁ ଆଉ ଭୁମ ଆମ୍ଭର ସାକ୍ଷାତ,
ବୋଲି ଦ୍ୱିଜଚନ୍ଦ୍ର ହେଲେ ଅନ୍ତର୍ହିତ ।

ସଙ୍ଗେ ଘେନି ତାରା- ସେନା ତାରାପତି
ନଭ-ରଣାଙ୍ଗଣେ ଉଠିଲେ ତଡ଼ତି ।
ବର୍ଷୁଇଲେ ଗୃହ- ବେଗେ ବଦ୍ୟଶର
'ଶର' କିବା 'ସର' ନୁହଇ ଗୋଚର ।
ବିୟୋଗୀ ଭାବନ୍ତି ତୀକ୍ଷ୍ଣମୁନା ଶର;
ଭାବନ୍ତି ସଂଯୋଗୀ ପ୍ରେମ-ସୁଧାସର ।

ସେ ସର-ସଲିଳେ  ହୋଇବାକୁ ସ୍ନାତ
ଗୁପତ-ମଣ୍ଡପେ  କବି-ଶିରୋମଣି,
ପାନ କରୁଥିଲେ  ଚନ୍ଦ୍ରିକା-ସୁଷମା
ଊର୍ମିମାଳ ସମ  ଉଠଇ କଳ୍ପନା;
ସ୍ୱଭାବେ ତରୁଣ  କବିତା-ରସିକ,
ସୁଲଳିତ କଣ୍ଠ-  ସଙ୍ଗୀତେ ସୁଦକ୍ଷ,
ସମ୍ମୁଖେ ଶୋଭିତ  କୈଳାସ ବିପିନ,
ଊର୍ଦ୍ଧ୍ୱେ ବିରାଜିତ  ରୋହିଣୀ-ରମଣ ।
ଦରଶନେ କବି—  ହୃଦ-ପାରାବାର
ହେଲା ଉଦ୍‌ବେଳିତ  ଜନମେ ବେଳୁଁ ବେଳ,
ଜନ୍ମିଲା ଭାବନା-  ତରଙ୍ଗ ଉତ୍ତାଳ
ଅଜାଣତେ ସ୍ୱର  ହୋଇଲା ଗମ୍ଭୀର ।
ଉଚ୍ଛୁଳିଲା ଶ୍ଲୋକ  ଉଠିଲା ଝଙ୍କାର
ବୋଲନ୍ତି କବୀନ୍ଦ୍ର  "ଆହେ ନିଶାକର !
ଯେ କାଳିମା ଥିଲେ  ହୃଦୟେ ତୁମ୍ଭର
ଜନ-ନୟନେ ଦିଶେ  ଆନ ଆନ ପର ।
କେ କହେ କଳଙ୍କ  କେ ଜଳଧି-ପଙ୍କ
କେହୁ ଭାବେ ମୃଗ,  ଯହୁଁ ସେ ମୃଗାଙ୍କ ।
ପୁଣି କେ ବିଶ୍ବରେ  ଅବନୀର ଛାୟା
ମାତ୍ର ମୁଁ ପାଉଛି  ଭିନ୍ନ ରୂପେ ତାହା ;
ନିଶୀଥିନୀ-ଗାଢ଼-  ଅନ୍ଧକାର-ମାଳା-
ପାନେ ଏକଚିତ୍ତ  ହୋଇ ଦିଶେ କଳା,
କିବା ନଭସ୍ଥଳ  ନୀଳ ପାରାବାର
ଫେନପୁଞ୍ଜ ସମ  ତାରକାମଣ୍ଡଳ,

କୁଣ୍ଡଳିତ ଫଣୀ        ଅଛ ନଷ୍ଟାପତି !
କଳଙ୍କ ବ୍ୟାଜରେ        ଶମ୍ଭୁ ନ ଶ୍ରୀପତି ?"

ଚୁଲିଥିଲା ସ୍ରୋତ        ସଙ୍ଗୀତ-ଲହରୀ
ଗଗନେ ପବନେ        ବ୍ୟାପି ଚାରି ପୁରି
ଜେମା ହଂସପୁରେ        ମୋହ ମନ୍ତ୍ର ସମ,
ଶୁଣୁଥିଲା ଯହିଁ        କିଶୋରୀ କୁସୁମ ।
ଶ୍ରବଣେ ଉଚ୍ଚାଟ        ହୋଇ ରାଜବାଳା
ଉଠିଲା ଆସନୁ        କରେ ପୁଷ୍ପ-ମାଳା ;
ନାଦ ଅନୁସରି        ନିକ୍ଷେପିଲା ପାଦ
ପଦେ ପଦେ ଉପୁ-        ଜାଇ କୋକନଦ,
ଯଥା ବିଶ୍ୱରମା        ମଧୁବନ ଆଶେ
ପଦ୍ମବନେ ଗତି        କରନ୍ତି ଉଲ୍ଲାସେ,
ଗିରିପୁତ୍ରୀ ଯଥା        ଅକ୍ଷମାଳା କରେ
ଗମନ୍ତି କୈଳାସେ        ଗିରୀଶ-ମନ୍ଦିରେ,
ସେ ରୂପେ ପ୍ରମଦା        ଚଳିଗଲା ଧୀରେ
ଭୁଜଙ୍ଗୀ ଯେସନ        ଜାଙ୍ଗଳ ଫୁଙ୍କାରେ
ରହେ ଜ୍ଞାନ ହାରି        ଭିତ୍ତିଚିତ୍ର ସମ,
ତଥା ସେ ଅବଳା        ହୋଇଲା ଅଜ୍ଞାନ ।
ବସନ୍ତ ପୁରୁଷ        ପ୍ରତିଜ୍ଞାବଚନ
ଉଭା ହେଲା ଯାଇ        ଗୁରୁ ସନ୍ନିଧାନ ।
ଦରଶନେ କବି        ହୋଇଲେ ସ୍ତମ୍ଭିତ
ଭାଙ୍ଗିଗଲା ତହିଁ        କବିତାର ସ୍ରୋତ ।
ଆଚମ୍ବିତେ ଯୁବା        ପଚାରନ୍ତି ଧୀରେ
"କେ ତୁମେ କିଶୋରି ! ଏ ନିଭୃତ ପୁରେ ?

ସ୍ୱଭାବେ ଷୋଡ଼ଶୀ ନବୀନବୟସ
ମୁଖଁ ହୋଇନାହିଁ କୋମଳତା ହ୍ରାସ,
ଲଭିନାହିଁ ଚକ୍ଷୁଁ ବାଲ୍ୟ-ଚପଳତା
କି ସାହସେ ଏଥି ଆସିଲ ବନିତା ?
କିବା ଭ୍ରମାବେଶେ ମଣି ଆନ-ସ୍ଥଳ
ପ୍ରବେଶିଲ ବାଳା ଦିଅଟଗୋ ଉତ୍ତର ।"

ଶୁଣି ଜେମାମଣି ଦିଏ ପ୍ରତିଗିର,
"ବୋଲ ହେ ଗାୟକ ! କାହିଁ ତୁମ୍ଭ ଘର
କପାଁ ଏଥି ବସି କର ହେ ସଙ୍ଗୀତ
ଉଦ୍‌ଭ୍ରାନ୍ତ-କଳ୍ପନା କିବା ଏ କବିତ୍ୱ ?
ଯା'ର ବଳେ ତୁମ୍ଭେ ଆଣିଲ ଓଙ୍କାର
ବାଣୀ-ହଂସପୁରୁ ଅବରୋଧ-ନାରୀ ।
ମୁହିଁ ରାଜଜେମା, ତୁମ୍ଭ ପରିଚୟ "
ଏତିକରେ କବି ହୋଇଲେ ଅଥୟ ।
କର-ପଦ୍ମେ ଘୋଟି ଆପଣା ନୟନ
ବୋଲନ୍ତି ବଚନେ, "ଯୁବତୀ-ରତନ !
ଜାଣୁ ଜାଣୁ କପାଁ ମୋ ପ୍ରତିଜ୍ଞାବାଣୀ
ଆସିଲୁ ମୋ ପୁରେ ନବୀନା ତରୁଣୀ ?
ରହନା ରହନା ମୋ ସମ୍ମୁଖେ ତୁହି
କୁଷ୍ଠବ୍ୟାଧିଗ୍ରସ୍ତ ମୁଖ ନ ଦେଖଇ
ତେଣୁ ପଦ କୁଷ୍ଠ- ପଟ ଅନ୍ତରାଳେ,
ଶିଖାଏ କବିତା ଉନ୍ମାଦ-ଅନ୍ତରେ ।
ଯାଅ ଶିଷ୍ୟାଙ୍କି ! ନ ରହ ଏଠାବେ"
ଏତେ କହି ମଥା ପୋତିଲେ ବିଷାଦେ ।

ବସନ୍ତସେ ସୁବଦନ୍ତୀ      ପସ୍ତୁରନ୍ତି ତହିଁ,
"କେ କହଇ ଗୁରେ !      ବ୍ୟାଧି-ଗ୍ରସ୍ତା ମୁହିଁ ।
ଅନୁରୋଧେ ମୋର      ପିତା ନରପତି
ଜବନିକା ବାନ୍ଧି      ସତ୍ୟ ପାଳିଛନ୍ତି ।
କେବେ ନ ଦେଖିବ      ଯୁଗ୍ମ ଚକ୍ଷୁ-ହ୍ୱନେ
ଏ ପ୍ରତିଜ୍ଞା ଥିଲ      ମୋ ମନେ ଗୋପନେ ।
ତୁମ୍ଭେ କୋଶ୍ୱର      ନୟନରହିତ
ଏଣୁ କ୍ଟଷ୍ଟପଟ      ହେଲ ଆଚ୍ଛାଦିତ ।
ଜଣାଗଲ ଏବେ      ଏ ସବୁ କଳ୍ପନା
ସଚିବ ନୃପତି      ଗୁପତ ମନ୍ତ୍ରଣା ।
ନୁହେଁ ବ୍ୟାଧିଗ୍ରସ୍ତା      ମୁହିଁ ହେ କବୀନ୍ଦ୍ର !
ପ୍ରତ୍ୟକ୍ଷେ ଦେଖନ୍ତୁ      ନୁହଁ ତୁମ୍ଭେ ଅନ୍ଧ ।
ଫିଟାଅ ନୟନ      ଫିଟୁ ମୋ ସନ୍ଦେହ"
ଏତେ କହି ବାମା      ଦୂର କଲ ଭୟ ।
ସ୍ୱକର-ପଲ୍ଲବେ      ପରଶି ବନ୍ଧଣ-
କର ଛଡ଼ାଇଲ      ରମଣୀରତନ ।
ଚନ୍ଦ୍ରିକା ପରଶେ      ଯଥା ଚନ୍ଦ୍ରକାନ୍ତ,
ମଳୟ ପରଶେ      ଯଥା ମଲ୍ଲୀବୃନ୍ତ,
ଅନଳ ପରଶେ      ଯଥା ବାରୁଦାଳି,
ପ୍ରଥମ ପରଶେ      ତଥା ହେଲ ବାଳୀ ।
ଫିଟାଇ ଶ୍ରୀକରେ      ଲୋଚନ-ଯୁଗଳ
ପିଇଲ ସୌନ୍ଦର୍ଯ୍ୟ-      ସୁଧା କ୍ଷଣେ କାଳ ।
ମାଦକ ମଦିରା      ପୂରିଲ ନୟନେ
ପରସ୍ପର ଚାହିଁ      ରହିଲେ ମଉନେ ।

ହମେ ହେଲା ଆସି | ଆନନ୍ଦ ପ୍ରଫୁଲ୍ଲ
ରଞ୍ଜିତ ହରିଲା | କପୋଳମଣ୍ଡଳ !
ଧୀରେ ଆସି ଲଜ୍ଜା | ବସିଲା ମାନସେ
ନଇଁଗଲା ଶିର | ପରସ୍ପର ପାଶେ !
ଅନ୍ତରାଳେ ସ୍ମର | ଲୁଚିଥିଲା ରହି
ବାନ୍ଧିଲା ନାରାଚ | ଆକର୍ଣ୍ଣ ଟାଣିଇ ।
ସେ ନାରାଚ ଭୟେ | ପରସ୍ପର ଆସି
ପରସ୍ପରେ ଆଲି- | ଙ୍ଗିଲେ ହସି ହସି ।
କାମନା ପୂରାଇ | ରତ୍ନଦେବୀ-କାନ୍ତ
ଗମିଲେ ଆପଣା- | ପୁରକୁ ତ୍ୱରିତ ।
ସେହ୍ନନ୍ଦନୁ ସ୍ୱଜ- | କୁମାରୀ ଏକାନ୍ତେ
ଶିଖଇ ନୂତନ- | କବିତା ଅଭ୍ୟନ୍ତେ ।

---

## ଷଷ୍ଠ ସର୍ଗ

ରାଗ— ରସିକୋଇଲି

ଅତି ରସମୟ ବସନ୍ତ କାଳ,
ରସାଳେ ମଞ୍ଜୁଳ ନବମୁକୁଳ,
ଚୂତ ଡାଳେ ବସି ବିଳସେ ପିକ,
କାନନେ ଶୋଭିତ ପକ୍ୱ ମଧୁକ,
ଏକାଳେ ରାଜକୁମାରୀ,
ପ୍ରିୟ ଗୁରୁ ସଙ୍ଗେ          ଖେଳେ ନାନା ରଙ୍ଗେ
ବନେ ବିଜନେ ବିହରି ।

ସ୍ୱଭାବେ ତରୁଣୀ ନବପ୍ରେମିକା,
ଦୁଜେ ନୃପ-କନ୍ୟା କଳାପଣ୍ଡିତା,
ତୃତୀୟେ କାମିନୀ ଅପରିଣୀତା,
ଚତୁର୍ଥେ ଶିଖର ରସକବିତା,
ସଙ୍ଗତେ ତରୁଣ କବି -
ନ ବହିବ ଯେବେ          ପ୍ରେମତରଙ୍ଗିଣୀ
ପଶ୍ଚିମେ ଉଇଁବେ ରବି ।

ଘନେ ଘନେ ସଞ୍ଜେ ରାଜଦୁଲାଳୀ,
ପ୍ରିୟ-କର ଧରି କାନନେ ମିଳି,
ଛଳି ଛଳ ପଞ୍ଚୁରଙ୍କ ବନିତା,
ଶିଖାଇବ ପରି ଗୁରୁ କବିତା,
ବସନ୍ତ କବି ସେ କାଳେ,
ଦେଖାଇଦିଅନ୍ତି ପିକ-ଦମ୍ପତିଙ୍କ
ସମ୍ମୁଖ-ବକୁଳ-ଡାଳେ ।

ଲାଜେ ନବବାଳା ପୋତଇ ମଥା
ରହଇ ମଉନେ ନ କହି କଥା
ଜାଣି ପ୍ରିୟା-ଚିତ୍ତ ଭାଷନ୍ତି କବି
କହ କହ ଆରେ ନବବାନ୍ଧବୀ !
ପ୍ରସୂନେ ଭ୍ରମେ ଷଟ୍‌ପଦ
ଦେଖି ବାଳା କହେ ପୁରୁଷେ ଜାଣନ୍ତି
ଏହିପରି ଛନ୍ଦଭେଦ ।

ପାରୁଶେ ଚମ୍ପକ-ଲତା ନିରେଖି,
ପଚାରନ୍ତି ଗୁରୁ କହ ତରକି,
ଫୁଲେ ସୁସଜ୍ଜିତ ହେଲେ ଅଙ୍ଗ,
ତଥାପି ମଧୁପ ନ କରେ ସଙ୍ଗ,
କହିଲଇ ତହିଁ ଲଳନା,
ବାହାର ସୌନ୍ଦର୍ଯ୍ୟ କାର୍ଯ୍ୟ ନାହିଁ କିଛି
ବୋଲି ସେ ଜାଣଇ ସିନା ।

ଥରେ ଥରେ ଗୃହିଁ ଦୂର କେଦ୍ାର,
ବୋଲନ୍ତ ଶୁଣରେ ରମଣୀବର !
ଫଳ ବନା ଏହା ଦଶେ କେମନ୍ତ ?
କ୍ଷଣେ ଭାଳ ବାମା ବୋଲେ ଏମନ୍ତ
ଶୁଣ ଶୁଣ ପ୍ରିୟ-କାନ୍ତ,
କୃପଣ ସାମନ୍ତ ହେଲେ ସର୍ବସ୍ୱାନ୍ତ
ତା' ରୂପ ଦଶେ ଯେମନ୍ତ ।

ଲତାନ୍ତ ଗୁପତ ଯୂଥିକା ଦେଖି,
ହରଷେ ପୁଛନ୍ତି ରେ ପ୍ରାଣସଖି !
ପତ୍ର ଅନ୍ତରାଳେ ଲୁଚ ଯୂଥିକା,
କପର ଦଶଇ କହ ପ୍ରେମିକା !
ଶୁଣି ଜେମା କହେ ଧୀରେ,
ମୂର୍ଖ ଗ୍ରାମେ ଯାଇ ପଣ୍ଡିତ ରହିଲେ
ଦଶଇ ଯେଉଁ ପ୍ରକାରେ ।

ପୁଣି କାହିଁ ଦେଖି ଲତା ପାଦପ,
ବୋଲନ୍ତ ସଜନ ମନେ କଳପ,
ସେ ବୋଲେ ମନେ କ କଳ୍ପିବ ମୁହିଁ,
ରବ ଗ୍ରୀଷ୍ମରେ କ ରଙ୍ଗଣ ଶୋହି,
ମଞ୍ଜୁଲତା-ରାଜବାଳୀ,
ଗୁରୁ ପାଦପରେ ଆଶ୍ରୟ ନେଲଣି
ବଂଶେ ଦେଇ ଜଳାଞ୍ଜଳି ।

ଏରୂପେ ଦିବସେ କରି ବିହାର
ପ୍ରଦୋଷେ ଫେରନ୍ତି ଯେ ଯାହା ପୁର,
ଅର୍ଦ୍ଧନିଶୀଥିନୀ ଦେଖି ବିହ୍ୱଳ
ଗମନ୍ତି କୁମାରୀ-ପୁରକୁ ପୁଣ,
ଦୂରୁ ଦେଖି ରାଜବାଳା
ଆଦ୍ୟ ଉପହାର ପୀରତି-ଚୁମ୍ବନ
ପଛେ ଦିଏ ଫୁଲମାଳା ।

ବସାଇ ପଲଙ୍କେ ଅଙ୍କରେ ବସି,
ହସାଇ କୌତୁକେ ଗେହ୍ଲାଇ ହସି,
ପରଶାଇ ଉରେ ଉରଜ ବେନି,
ବନ୍ଧଭୁଜବଲ୍ଲୀ ବନ୍ଧ ଗ୍ରହାଣି;
କରେ ଧୀରେ ଆଲିଙ୍ଗନ,
ପୁଷ୍ପିତ ବ୍ରତତୀ ଚନ୍ଦନ-ପାଦପେ
କରଇ ଯଥା ବେଷ୍ଟନ ।

ଏ ସମୟେ କାମ ଗୁପତେ ବସି,
ପ୍ରହାରେ ବିଶିଖ ବଳେ ଆକର୍ଷି,
ଉଭୟେ ତା ସଙ୍ଗେ କରନ୍ତି ରଣ,
ଶେଷେ ଭାଙ୍ଗନ୍ତି ସେ ମଦନ-ଠାଣ,
ତା ରଥ ବଳେ ଓଟାରି,
ନିତମ୍ବ ଆକାରେ ଚରମଭାଗେ ତା
ରଖିଛନ୍ତି ନବନାରୀ ।

ନିଶାନ୍ତେ ଗମନ୍ତି ଯେଝା ସଦନ,
ଏଭାବେ କାଟନ୍ତି ସେ ନିତିଦିନ,
ମାସ ପରେ ମାସ ଗଲା ବରଷ
ଦିନେ ଆଜ୍ଞା ହେଲା ସେ କ୍ଷିତୀଶ,
ନିମନ୍ତି ଆଣି ବିବୁଧ,
ବୁଝିବା କନ୍ୟାର କବିତା-ଶକତି
ପରୀକ୍ଷା କରିବା ଆଜ ।

ଆଜ୍ଞାମାନେ ଯାଇ ନଗରେ ଘୂରି,
ଜଣାଇଲା ବ୍ୟଗ୍ରେ ସେ ସମାଚାରି,
ଏକତ୍ରିତ ହୋଇ ସର୍ବ ପଣ୍ଡିତେ,
ଆତ୍ମମତ୍ସରତା-ଜଡ଼ିତ-ଚିତ୍ତେ,
ପରବେଶ ଦରବାରେ ।
ଯେଝା ସ୍ଥାନେ ଯାଇ ବସିଲେ ସରବେ
ବୁଡ଼ି ରହି ଅହଂକାରେ ।

ଉଚ୍ଚାସନେ ଆସି ବସିଲେ ଗୁରୁ,
ବିଜେ ହେଲା ବାମା ଉତ୍ତରପୁରୁ,
ଚରଣ-ନୂପୁର କରି ଶବଦ,
ଗର୍ଜି କହିଦେଲା ହୁଅ ନିସ୍ତବ୍ଧ,
ଶ୍ରୀହସ୍ତେ ପୁସ୍ତକ ଶୋଭି,
ବ୍ରହ୍ମ-ସଭାସ୍ଥଳେ ଭାରତୀ ଦେବୀକି
କଉତୁକେ ହେଲେ ଉଭା ।

ଶିରେ ଉପରଣ ମାଳ ବସନ,
ମେଘ ଅନ୍ତରାଳେ ଶଶୀ ଯେସନ
ଦିଶି ନ ଦିଶଇ ମୁଖ ସୁଷମା,
ବିଧି ସୃଷ୍ଟି-ପରମାପକ ସୀମା,
ଅପଲକେ ସଭାଜନେ,
ଗୃହାନ୍ତ ବସ୍ତୁପ୍ରାୟେ                    ପୁତ୍ତଳିକାପ୍ରାୟେ
ପିଇ ଯିବାକୁ ନୟନେ ।

ପଟଅନ୍ତରାଳେ ବସିଲ ବାଳୀ,
ରାଜାଦେଶକ୍ରମେ ବୁଧମଣ୍ଡଳୀ,
ପଗ୍ଭରିଲେ କେମାପ୍ରଶ୍ନଭଙ୍ଗ ତହିଁ,
ଗୁରୁ ସୁର ବାଳା ଉତ୍ତର ଦେଇ,
କଲ ସର୍ବେ ଅଚମ୍ଭିତ,
ହରଷେ ବିଷାଦେ                    ରହିଲେ ବିବୁଧେ
ଉଲ୍ଲସିତ ନରନାଥ ।

ଆନନ୍ଦ ଗଦ୍‌ଗଦେ ବୋଲେ ସଚିବ,
ଧନ୍ୟ କଶ୍ୱାଶ୍ୱର ଧନ୍ୟ ଭୂଦେବ,
"ଧନ୍ୟ ହେ ବିହ୍ୱଣ ଧନ୍ୟ ପ୍ରତିଭା,
ଯା' ବଳେ ମଣ୍ଡିଲ ଏ ରାଜସଭା,
ଧନ୍ୟ ତୁମ୍ଭେ ନୃପବାଳା,
କବିତା-ସମ୍ପତ୍ତି                    ଅରଜ ରଖିଲ
ଚିର-କୀରତ୍ତି ଅଚଳା ।"

ପଛେ ରାଜା ଦିବ୍ୟ ଆସନୁ ଉଠି,
ସଭାସଦ-ବୃନ୍ଦେ ଦେଇ ସୁଦୃଷ୍ଟି,
କହନ୍ତି ଶୁଣ ହେ ବିବୁଧକୁଳ,
ଯେତେ ଏଥି ସର୍ବେ ହୋଇଛ ଠୁଳ,
ମୋ ଦୁହିତା ମଞ୍ଜୁଲତା,
ଯାହାଙ୍କ ପ୍ରସାଦୁ ହୋଇଛି ପ୍ରଣୀତା
ରଚି ସରସ କବିତା ।

ସେ ମହାତ୍ମା କବୀଶ୍ୱର ବିହ୍ଲଣ,
ସବିନୟେ ତାଙ୍କୁ କରେ ଜଣାଣ,
ଅଜ୍ଞାନ-ମାନସେ ମୂଢ଼-ଭାବନା
ବଶେ କହେ ଦେବି ଗୁରୁ ଦକ୍ଷିଣା,
ନାହିଁ ମୂଲ୍ୟ ଧରା-ଧାମେ,
ଜ୍ଞାନବିନମ୍ରେ ସମର୍ପିବି ଯାହା
ଶ୍ରୀଗୁରୁ-କଞ୍ଜ ଚରଣେ ।

ତଥାପି କର୍ତ୍ତବ୍ୟେ ହୋଇ ଅଧୀନ,
ନିବେଦନ କରେ ନେବାକୁ ଦାନ,
ଆଦେଶି ମନରେ ଯାହା ଅଭୀଷ୍ଟ,
ଦୁହିତାର ମୋର ଫେଡ଼ିବ କଷ୍ଟ,
ଏତେ ମାତ୍ର ଅନୁରୋଧ,
ଦେଖିବେ ବିବୁଧ ଲଭିବେ ବିନୋଦ
ବିବୁଧ-କୁଳ-କୁମୁଦ !

କ୍ଷଣ ପରେ ଋଷି ଉଠି ଆସନୁ
ଚନ୍ଦନଚର୍ଚ୍ଚିତ ଧବଳ-ତନୁ,
ସ୍କନ୍ଧେ ଉପବୀତ ରଜତ-ସୂତ୍ର,
ଫୁଲ୍ଲାଙ୍ଗେ ଉତ୍ତରୀ ଦଶେ ଶୋଭିତ,
ବିଶାଳ-ଶାଳ-ଆକୃତି,
ସୁଧର୍ମା ମଧ୍ୟେ କି  ବିଜୟେ ନାରଦ
ହୋଇ ବିଦ୍ରୁବ-ଅତିଥି ।

ଜଳଦ-ଗମ୍ଭୀର-କଣ୍ଠେ ଭାଷନ୍ତି,
ଶୁଣ ମୋ ପ୍ରାର୍ଥନା କାଶୀ-ଭୂପତି,
ଗୁରୁଭାବେ ନ ମାଗିବି ଦକ୍ଷିଣା,
ବିପ୍ରରୂପେ ନ କରିବି ଯାଚନା,
ଲୋଡ଼େ ନାହିଁ ଗଜ ବାଜି,
ନ ମାଗେ ସମ୍ପତ୍ତି  ପାର୍ଥିବ ବିଭୂତି
ଚିତ୍ତୁଁ ଆସକ୍ତି ବରଜି ।

ଚପଳାଚଞ୍ଚଳ-କୁରଙ୍ଗେକ୍ଷଣା,
ରୁଚିର-ରୁଚକ-କୁଚମଣ୍ଡନା,
ନବ-ନବନୀତ ସମ କୋମଳା,
ଲବଙ୍ଗବାସିନୀ ଏ ରାଜବାଳା,
କରିଦେଲେ ଅଙ୍ଗୀକାର,
ପୂରିବ କାମନା  ଲଭିବ ବେଦନା
ହୃଦୟୁଁ ହେବ ଶୀତଳ ।

ଏତେ କହି ଯୁବା ହେଲେ ମଉନ,
ସଦମ୍ଭେ ବସିଲେ ନିଜ ଆସନେ,
ଆଚମ୍ବିତ ଶୁଣି ସେ ସଭାସଦ,
ପ୍ରତିମାପ୍ରାୟେକ ହେଲେ ସ୍ତବ୍ଧ,
ବନ୍ଧବ କି ପ୍ରଭଞ୍ଜନ,
ତେଣୁ ପରା ହେଲା ପ୍ରକୃତି ନିଶ୍ଚଳ
ସ୍ତବ୍ଧ ଧରଣୀ ଗଗନ !

କ୍ରୋଧେ ରକ୍ତ-ଚକ୍ଷୁ ହେଲେ ନରେଶ,
ଆଶୀବିଷ ସମ ଶୁଭେ ନିଃଶ୍ୱାସ,
କାଳାନଳ ପ୍ରାୟେ ଦିଶିଲା ରୂପ,
କୋପେ ଆଜ୍ଞା ଦେଲେ ତହିଁ ଭୂମିପ,
ଏ ଅଟେ କାଳ-ଭୁଜଙ୍ଗ,
ପୟଃପାନ ଦେଇ ପୋଷିଲେ ତାହାକୁ
କରାଏ ସେ କାଳ ସଙ୍ଗ ।

ପାଣିପାଦ ବାନ୍ଧି ନିଅ ତୁରନ୍ତେ,
ଶୂଳୀ ଦିଅ ଯାଇ ନଗର ପ୍ରାନ୍ତେ,
ମୂରଖ କାମନା ମୃତ୍ୟୁ-ଚତ୍ୱରେ,
ଦେନଯାଅ ରାଜପୁରୁ ସତ୍ୱରେ,
ଆଦେଶି କାଶୀ-ରାଜନ,
ବଜ୍ରପ୍ରଭା ତୁଲ୍ୟ ଅନ୍ତର୍ହିତ ହେଲେ
ନବରେ ବିଷଣ୍ଣ ମନ ।

ରାଜାଦେଶେ ଆଣି ଲୌହଶିକୁଳ
ବାନ୍ଧ ପାଣିପାଦ ନେଲ ପ୍ରହରୀ
ବସ୍ତ୍ରେଷ୍ଟୁ ସର୍ବେ ହେଲେ ଅଧୀର
ବୁଡ଼ିଗଲା ଚେତା ରାଜଜେମାର
ଆସନୁ ପଡ଼ିଲା ଢଳି,
ଦେଖି ସହଚରୀ ଗ୍ରୁଡ଼ିଲେ ବୋବାଳି
ହା ରାଜକୁମାରୀ ବୋଲି ।

# ସପ୍ତମ ସର୍ଗ

ରାଗ – କଲ୍ୟାଣ ଆହାରୀ

କାଶୀନଗ୍ର କପାଁ ନାସ୍ତବଧ ଆଜ
ନ ହେଉଛି ଜନ ଗହଳ
ଠାବେ ଠାବେ ଠୁଳ ପୁରାଙ୍ଗନାକୁଳ
ନୃପତି ଆଦେଶକୁ ଭାଳ,
କେ ବୋଲେ, କି କଲା ରାଜାର ଦୁଲାଳ,
ଅନ୍ତଃପୁରେ ଥାଇ ସୁପଣ୍ଡିତା ହୋଇ
କୁଳରେ ଲଗାଇଲା କାଳ ।

ପୁଣି କେ କହଇ ଶୁଣ ଶୁଣ ସକ୍ସି
ଅପରାଧ ନାହିଁ ଜେମାର
ତରୁଣ-ବୟସେ ତରୁଣ ସଙ୍ଗତେ
କରାଇଲେ ସଦା ବିହାର,
କେମନ୍ତେ, ବରଜିବ କାମ ଗୁମୁରୁ ?
ଏକେ ତ ଅବଳା ଅଳପ ବୟସ
ସ୍ୱଭାବେ ରମଣୀ ଯେ ଭୀରୁ । ୧ ।

ପୁଣି କେ ତରୁଣୀ ବୋଲେ ଗୋ ସଜନୀ
ଏ ସବୁ ସତ୍ୟ ବେଖ୍ୟାତ
ଉତ୍କୋଚର ଲୋଭେ ପଶାଇଲ ଘରେ
କୁଳଶୀଳହୀନ ତସ୍କର ।
ସତ୍ୟରେ, ନଥିଲେ କି ଆନ ପଣ୍ଡିତ
ବିଦ୍ୱେଷ ପୋଷିଣ ବିଦେଶୀଙ୍କୁ ଦିନା
କରାଇଲ ସର୍ବ-ପଣ୍ଡିତ ।

ଶୁଣି କେ ଯୁବତୀ କହଇ ତରକ
ସଖି ଅଦ୍ଭୁତ ସଂସାର
ନିଜ ଦେଶ-କନ୍ୟା ବିରୂପା ଦିଶଇ
ବିଦେଶିନୀ ରମ୍ଭା ପ୍ରକାର,
କେମନ୍ତେ, ହୋଇଯିବ ସେ ମିତ୍ତ ଆନ
ଦେଖୁଥାଇ ପର ଉଭୟ ବିବାଦେ
ତୃତୀୟ ହୁଏ ଲାଭବାନ ।୪।

ସେ କାଳେ ଶୁଭିଲ ଜଳଧିନିର୍ଘୋଷ
ପରିପ୍ରେ ଲୋକ କୋଳାହଳ
ବିସ୍ମୟେ ସରବେ ହେଲେ ଯାଇ ଠିଆ
ବାହାର ମନ୍ଦିର-ଦୁଆର ।
ବନିତା, ଦୂରୁ ଦେଖିଲେ ଜନ-ସ୍ରୋତ
ମଧ୍ୟେ ଶୋଭୁଥିଲେ କନ୍ୟା ଗୌର ବିପ୍ର
ଭୂତେ ଯେସନେ ଭୂତନାଥ ।୫।

ରୂପ ଦରଶନେ ଲୁଳ-ପାଳ ଗଣ
ସ୍ତମ୍ଭୀଭୂତ ଯେହ୍ନେ ପ୍ରତିମା
ନୟନୟୁଗଳେ ନ ଥିଲା ନିମେଷ
ପାଲଟିଲେ କି ଦେବ ବାମା ।
କାମିନୀ, ଆପଣା ମନେ ମନେ ଭାବି
କେତେ ଜନ୍ମେ କେତେ ପୁଣ୍ୟ ଅର୍ଜିଥିଲି
ଜେମା ବରିଲି ଏ ସୁକବି ।୬।

ଦେଖ ଦେଖ ସଖି ଭ୍ରୂଲତା ଧନୁ
କଟାକ୍ଷ ମୋହନ-ବିଶିଖ
ଶିବ-ଭାଲ-ନେନେ ଭସ୍ମ ହୋଇ ପର୍ବେ
ସ୍ମର ଧରନ୍ତି ଶିବ ରୂପ ।
କେମନ୍ତେ, ଧବଳ ଅଙ୍ଗ ଦିବ୍ୟ- ଶୋଭା,
ଉତ୍‌ଫୁଲ୍ଲ ବଦନ ପ୍ରଶାନ୍ତ-ନୟନ
ଦେଖି କେ ନୋହିବ ଗୋ ଲୋଭା ।୭।

ଏହିରୂପେ ଯୋଷା ହେଉ କଥା ଭାଷା
ଅଦୃଶ୍ୟ ହୋଇଲା ବନିତା,
ପ୍ରଳୟର ମେଘ ମିଶିଯାଏ କ୍ଷଣେ
ଅନନ୍ତ ଗରଭରେ ଯଥା,
ତେମନ୍ତ, ଜନସ୍ରୋତ ମୃତ୍ୟୁ ଚତ୍ୱରେ
ହେଉ ପରବେଶ ସ୍ତମ୍ଭିଗଲା ଘୋଷ
ସଚିବ-ବର ଆଦେଶରେ ।୮।

ଅପରାଧୀ ଆଗେ ଉଭାହୋଇ ମନ୍ତ୍ରୀ
କହନ୍ତି ଶୁଣ ବିପ୍ରବର,
"କର୍ତ୍ତବ୍ୟ ନିର୍ଦ୍ଦେଶେ ପାଳିବୁ ହେ ଆଜ୍ଞା
ତବ ମୃତ୍ୟୁ-ଦଣ୍ଡ ନିକର ।
କବୀନ୍ଦ୍ର, ନ ରଖିବେ ବ୍ରହ୍ମା ଶଙ୍କର,
ଆପଣା ହସ୍ତରେ ବିଷ ପାନ କଲେ
ସେ ଦୋଷ ନୁହଇ କାହାର ।୯।

ହେଲା ମୃତ୍ୟୁ କ୍ଷଣ କର ହେ ସ୍ମରଣ
ଯା' ଠାରେ ରଖିଛ ଭରସା,
କାହି ଥିଲେ ବିପ୍ର କି ଲାଳସା କ୍ଷିପ୍ର
ପୂରାଇବା ତବ ମନୀଷା ।
କବୀନ୍ଦ୍ର ! ଜାଣିଥାନ୍ତି ସବୁ ମୁଁ ଆଗେ
ନ ଘଟିନ୍ତା କେବେ ଏହି ଅଘଟଣ
ଯୁବା ବିପ୍ର-ହତ୍ୟା ଭୂ-ଭାଗେ ।୧୦।"

ଶୁଣି ମନ୍ତ୍ରୀବାଣୀ କବି-ଶିରୋମଣି
ଭାଷନ୍ତି ସ୍ୱଭାବ ଗମ୍ଭୀରେ,
"ଶୁଣହେ ସଚିବ ସୁମରୁଛି ଆଜି
ଜୀବନ ସାଗର ସୀମାରେ ।
ସଚିବ- ବର କର ହେ ଅବଧାନ
ଶିଖିଷାଙ୍ଗୀ ବାଳା ବିନା ମୁଁ ନ ଜାଣେ
ଆନ ଦେବୀ ଦେବା ସ୍ମରଣ ।୧୧।

"ଦିନେ ମଧୁ କାଳେ ପ୍ରାସାଦର ଚୂଳେ
ବସିଥିଲି ସେ ମୃଦୁ ଭାଷୀ
ନିମ୍ନ ଉପବନେ ଭ୍ରମୁ ଭ୍ରମୁ ଶିରେ
ଫିଙ୍ଗିଲି କୁନ୍ଦମାଳା ରସି
କୁମାରୀ, ହସିଲି ବାସ୍ ମୁଚକି ଦେଇ
ସେ କାଳେ ସୁଦନ୍ତୀ ଦନ୍ତବାସ ଶୋଭା
ସୁମରୁଛି ମନ୍ତ୍ରି ଏଠାଇଁ ।୧୨।

"ଦିନେ ଅଭିମାନେ ପ୍ରେମଶୀଳା ବାଳା
ଯତନେ ନ ବାନ୍ଧି କବରୀ
ନିଭୃତେ ଶେଫାଳି- କୁଞ୍ଜେ ବସିଥିଲି
ନେନେ ନେତ୍ରଜଳ ନିବାରି ।
ସେକାଳେ, ପରବେଶ ହେଉଁ ଗୋପନେ
ପୋଛି ଦେଇ ଚକ୍ଷୁ ପୋତିଦେଲି ଶିର
ସେ କଥା ସୁମରୁଛି ମନେ ।୧୩।

"ଦିନେ ନିଶୀଥରେ ଗୁପତ ମନ୍ଦିରେ
ସାଜିଥିଲି ଫୁଲୀ ତଳପ
ପାର୍ଶ୍ୱେ ସୁଖାସନେ ବିଜେ କରିଥିଲି
ଜବାଧରେ ସ୍ମିତ ଅଳପ ।
ସହବ, ଯାଇ ମୁଁ ଉଭା ହେଲି ପାଶେ
ସେ କାଳେ ପ୍ରିୟାର 'ନଧର, ନଧର'
ଶବଦ ସୁମରେ ମାନସେ ।୧୪।

"ଏବେ ମନ୍ଦହାସୀ       ମୋ ଅଙ୍କରେ ବସି
ଅଧରେ ଅଧର ମିଶାଇ
ଚୁମ୍ବ ଦେବା କାଳେ       ବଦନ ସୁଷମ
ମରଣେ ଭୁଲିବି କି ମୁହିଁ ।
ସଚିବ, ପ୍ରିୟା ମୋ ମରାଳଗାମିନୀ
ପ୍ରାଣପାତେ ସୁଦ୍ଧା       ସୁମରୁଥିବି ମୁଁ
ଅପାଙ୍ଗର ଗୂଢ଼ ଗୃହାଣୀ ।୧୫।

"ଭୟ ନାହିଁ ମନ୍ତ୍ରି       ମୃତ୍ୟୁଦଣ୍ଡେ ମୋର
ଦୁଃଖ ନାହିଁ ଅବା ମରଣେ
ଶିରୀଷାଙ୍ଗୀ ବାଳା       ସହିବ କି କର
ବିରହ ଯନ୍ତ୍ରଣା ଜୀବନେ ।
ସଚିବ, କହିଦେବ ପ୍ରିୟା ଗ୍ରୀମୁରେ
ଅତୀତର କଥା       ପାଶୋରି ମନରୁ
ଚଳିଯାଉ ସୁଖ ଦୁଃଖରେ ।୧୬।

"ଶୁଣହେ ସଚିବ       ଆହୁରି କହିବ
ନବନୀତ କୋମଳାଙ୍ଗୀକୁ
ଶିଶୁ ପରଭୃତା       କାକଭୟେ ଯାଇ
ଶରଣ ପଶିଲେ ପିକକୁ ।
ଦୁର୍ଦ୍ଦୈବ, ବଣେ ଗଲେ ତାର ପରାଣ,
ସେ ଯେହ୍ନେ ରହଇ       ନିରାଶ୍ରୟ ହୋଇ
ତଥା ତୁ ହେଲୁ ବୋଲି ମଣ ।୧୭।"

କରୁଣ ମଧୁର କଣ୍ଠାଶ୍ବର ଗୀର
ଶୁଣି ମନ୍ତ୍ରୀବର ଚକିତ
କ ବଗୁର ଶତେ ରହିଲେ ମୁହୂର୍ତ୍ତେ
ପାଷାଣ ପ୍ରତିମୂର୍ତ୍ତି ବତ ।
ଘାତୁକେ, ଆଦେଶିଲେ କରି ତର୍ଜନ
"ମୋ ଆସିବା ଯାଏ ରଖିଥିବ ବନ୍ଧେ
ପ୍ରାଣରେ ନ କରି ନିଧନ" ।୧୮।

ଆଦେଶକୁ ବହି ତୁରଙ୍ଗ ଆରୋହି
ଚଳିଗଲେ ରାଜ ପୁରତେ
ଯହିଁ ନୃପମଣି ଗଣ୍ଡେ ରଖି ପାଣି
ଭାସୁଥିଲେ ଚିନ୍ତା-ସରିତେ ।
ସଚିବ-ବର ପରବେଶ ସତ୍ୱର
ପ୍ରଣମି ସମୁରେ ଜଣାଇଲେ ଧୀରେ
"ରାଜନ ଅବଧାନ କର" ।୧୯।

ଶୁଣି ଦୁଃଖେ ବାଣୀ ଭାଷନ୍ତି ନୃପମଣି
"କି ଶୁଣିବି ମନ୍ତ୍ରି ବାରତା
ଦଣ୍ଡାଦେଶ ବେଳୁଁ ଜେମା ମଞ୍ଜୁଲତା
ପଡ଼ିଅଛି ହୋଇ ଅଚେତା ।
ସଚିବ ! କି କରିବି କହ ଉପାୟ,
ଯା ଲଗି ସମ୍ପଦ ରାଜ ରାଜ ପଦ
ସେହୁ ଗମିଲେ ଯମାଳୟ ।୨୦।

"ସରିଗଲା ମନ୍ତ୍ରୀ   ହୋଇଗଲା ଭ୍ରାନ୍ତ
ପୋଷିଲା ବିଷ-ପାଦପକୁ,
ଲଗାଇ ସନ୍ନିଧେ   ସୁବର୍ଣ୍ଣ-ବଲ୍ଲରୀ
ନାଶ କଲା ଆଳବାଳକୁ,
ସଚିବ ! କି ବୁଦ୍ଧି କରିବି ମୁଁ ଏବେ
ଅପଖ୍ୟାତି ଭୟେ   କଲି ବ୍ରହ୍ମବଧ
କୁମାରୀ ହତ୍ୟା ହେବ ଯେବେ ?" ।୨୧।

କହନ୍ତି ସଚିବ   "ଶୁଣହେ ଭୂଦେବ !
ଘଟିନାହିଁ ବିପ୍ର-ମରଣ ।
ଅଦ୍ଭୁତ ବାରତା   ଅକଳ୍ପିତ କଥା
କରି ଗଲେ କବି ବଖାଣ ।
ଭୂଦେବ ! ମୃତ୍ୟୁରେ କାର୍ଯ୍ୟ ନାହିଁ କିଛି
କୁମାରୀ ସଙ୍ଗତେ   ଗୋପନ ପ୍ରଣୟ
ପଲ୍ଲବି ଅଙ୍କୁରି ଯାଇଛି ।୨୨।

"ସହଜେ ଦ୍ୱିଜାତି   ଯୁବା-କବି-ଗୁରୁ-
ବଧ ନୁହଇ ରାଜନୀତି
କବିତା-ଭୂଷଣୁ   ମଣୁଛି ପ୍ରତ୍ୟୟ
ପାଲଟିଲେଣି ସେ ଦମ୍ପତି ।
ଭୂଦେବ ! ନାଶଯିବେ ଯଦି ଜାମାତା,
କୁଳ କଳଙ୍କିନୀ   ସ୍ୱାମୀ ବିୟୋଗିନୀ
ହେବେ ସିନା ରାଜ-ଦୁହିତା ।୨୩।

"ଘୋଷି ଅପଖ୍ୟାତ ବ୍ୟାପିବ ଅକୀର୍ତ୍ତି
ଧରା ମଣ୍ଡଳେ ଚିରକାଳ,
କାଶୀ ରାଜବଂଶେ ଲାଗିବ କଳଙ୍କ
ଅବଧାନେ ଆଣ ଭୂପାଳ !
ଜଗତେ, କାଳ କାଳକୁ ନିନ୍ଦା ନୋହୁଁ
ନ ମରିବ ସର୍ପ ନ ଭାଙ୍ଗିବ ଦଣ୍ଡ
ଏତେ ଶ୍ରୀମୁଖେ ଆଜ୍ଞା ହେଉ ।୨୪।"

ଶୁଣି ମନ୍ତ୍ରୀ ଗିର ଭାଷନ୍ତି ନୃବର
"କି ଆଜ୍ଞା ଦେବି ହେ ସଚିବ !
ମୋ ବିବେକ ବୁଦ୍ଧି ଗଲାଣି ତ ହଜି
ଖୋଜ ଆପଣେ କଉଶଳ ।
ଯେମନ୍ତେ, ବଞ୍ଚିବ ମୋ ମଞ୍ଜୁଲତା
ହେଉ ଅପବାଦ ସହିବି ପଛେ ମୁଁ
ମୂର୍ଚ୍ଛି ନ ପାରିବି ଦୁହିତା ।୨୫।"

ବିବେକ ଚତୁର ସଚିବ ପ୍ରବର
ବିନୟେ ଜଣାନ୍ତି ଶ୍ରୀମୁଖରେ
"ଅପରାଧ ଯେବେ ମାର୍ଜନା କରିବ
ମୋ କଥା ବିଚାର ମନରେ,
ଭୂଦେବ ! ଦଣ୍ଡାଦେଶ କର ହରଣ
ସମର୍ପିବା କନ୍ୟା ସାଦରେ ବିପ୍ରଙ୍କୁ
କରାଇବା ପାଣିଗ୍ରହଣ ।୨୬।

"ବେଦଶାସ୍ତ୍ର କଥା ପୁରାଣ ଭାରତୀ
ସୃଷ୍ଟି କାଳୁ ଅଛି ପ୍ରସିଦ୍ଧି,
ଲୋମପାଦ କନ୍ୟା ସେତାରେ ବରିଲ
ସେ ଋଷ୍ୟଶୃଙ୍ଗ ତପୋନିଧି,
ଭୂଦେବ ! ବାସୁକ ପାତାଳ ରାଜନ,
ଅରପିଲ ଆଣି ସୋଦରୀ ଭଗିନୀ
ଜରତ୍କାରୁ ମୁନି ଚରଣ ।୨୭।

"ରାଜଧର୍ମ ମିତ ଶୁଣ କାଶୀପତି
ସକଳ ବର୍ଣ୍ଣଗୁରୁ ଦ୍ୱିଜ
ସବୁବର୍ଣ୍ଣେ ତାର ଅଛି ଅଧିକାର
ପାଣିଗ୍ରହଣେ ବଶ୍ୟମଧ୍ୟ,
ଭୂଦେବ ! ନ ରଖ ହେ ଆଉ ସଂଶୟ
ଆମନ୍ତ୍ରି ସୁକବ ଚଳାଇବା ବିଧି-
ବିଧାନେ ଶୁଭପରିଣୟ । ୨୮ ।"

ପ୍ରଚଣ୍ଡ ଗ୍ରୀଷମେ ଶୁଷ୍କ ମରୁଭୂମେ
ବୁହାଇ ବାୟୁ ପରିମଳ
ଶ୍ୟାମ ମେଘମାଳା ନିର୍ଘାତ ବରଷି
କରେ ଯଥା ଧରା ଶୀତଳ,
ତେସନ, ହେଲେ କାଶୀପୁର ରାଜନ
ମନ୍ତ୍ରୀ ଉପଦେଶ- ମଳୟ ପରଶେ
ଉଲ୍ଲସେ ମନ ଚୂତବନ ।୨୯।

କର୍ଣ୍ଣାଟର ରାଜା    ଗଲେ ହଂସ ପୁରେ
ଅଚେତା ଯହିଁ କୁମାରିକା
ସଖୀ ସହଚରୀ    ନାନା ଉପଚାରେ
କରୁଥିଲେ ଧୀରେ ସଚେତା ।
ସେ କାଳେ, ଆଦେଶିଲେ ନୃପ ଝଟତି
ଆଜ୍ଞାମାନେ ସଖୀ    ସାଜେ ସଜାଇଲେ
ଆଜନମ ସୁକୁମାରୀଙ୍କ ।୩୦।

ହାନ୍ଦୋଳାରେ ବଜେ    କରାଇ ମୃଗାକ୍ଷୀ
ପଛେ ଚଳିଲେ ସହଚରୀ
ନଗ୍ର ନର ନାରୀ    ଅପସାରି ଦେଲେ
ସ୍ୱର୍ଣ୍ଣବେତହସ୍ତ ପ୍ରହରୀ;
ଚତ୍ୱରେ, ଯାଇ ଉଭା ହେଲେ ସରବେ
ଅଗ୍ରେ ମହୀପତି    ପଛେ ମହାମନ୍ତ୍ରୀ
ତା ପଛେ ଜନତା ଏ ଭାବେ ।୩୧।

ପାଲିଙ୍କି ହାନ୍ଦୋଳ    ଦେଖି ମାଳମାଳ
ସବୁରି ବଦନେ ବିସ୍ମୟ
କ ଅବା ପଦ୍ୟୁମ୍ନ    ସଖୀସେନା ଘେନ
ସସମ୍ଭାରେ କଲେ ବିଜୟ ।
ଜନତା ଗୋଳ ଥମିଗଲା ମୁହୂର୍ତ୍ତେ,
ଜିଜ୍ଞାସୁ ନୟନେ    ଚାହିଁ ପରସ୍ପର
କଥାଭାଷା ହେଲେ ଗୁପତେ ।୩୨।

ଏହିକାଳେ ରାଜା ଧରି ଜେମାଂକର
ପଦ୍ମବ୍ରଜେ କରି ଗମନ
ବରୁଣ କଂଅବା ଧରି ପଦ୍ମାଳୟା
ଚଳନ୍ତି ବକ୍ଷ୍ୟ ସନ୍ନିଧାନ ।
ହିମାଦ୍ରି, ସଙ୍ଗେ ଗିରିରାଜ-ଦୁହିତା
ଗମନ୍ତି ସନ୍ଦିଳେ ସୁରହର କୋଳେ
ଅରପିବା ଆଶେ, ପ୍ରଶାନ୍ତ ।୩୩।

କେହି ନ ଜାଣନ୍ତି କି ହେତୁ ଭୂପତି
ବିଜୟେ ଯେନ ପରିବାର
ନିରେଖନ୍ତି ସର୍ବେ ରହି ଉଦଗ୍ରୀବେ
କି ହେବ ବିଶ୍ଵେଶ ମନର ।
ସେକାଳେ, ଆରୋହି ମାତଙ୍ଗ ନୃପତି
ସମ୍ବୋଧି ବିନୟେ ପୌରଜନେ ରୟେ
ଗମ୍ଭୀରେ ଘୋଷଣା କରନ୍ତି ।୩୪।

"ଶୁଣ ଶୁଣ କାଶୀ- ନଗରବାସୀ ଜନ
ଏଥେ ହୋଇଛ ଯେତେ ଠୁଳ
ମୋ କନ୍ୟା ମଞ୍ଜୁଳା ସ୍ଵୟଂବର ମାଳା
ଲମ୍ବାଇଛି କବ ଗଳାର ।
କୁମାରୀ, ଜାଣି ବା ନ ଜାଣି ଗୁପତେ
କଲା ଅପରାଧ ଘଟିଲା ପ୍ରମାଦ
ଭଲେ ବିଚ୍ଛୁର କର ଶତେ ।୩୫।

''ଶିଶୁ କଲ ଦୋଷ ଗୁରୁଜନେ ସିନା
କ୍ଷମନ୍ତି ନୋହି କୋପମତି
ରାଜା କଲ ଦୋଷ ପରଜା କ୍ଷମିବେ
ଏହା ତ ଚରାଚର ରୀତି ।
ସୁତରେ, ବରର ଦିଅ ହେ ଆଦେଶ
କରାଇବ ଜେମା ଶୁଭ ପରିଣୟ
ଏତେ ମାତ୍ରକ ଅଭିଳାଷ ।୩୭।

ବର ତ ଦ୍ୱିଜାତି ଚତୁର୍ବର୍ଣ୍ଣ ପତି
କାବ୍ୟ ଜଳଧି-କଳାକର
ମୋ କନ୍ୟା କବିତା- ରସ-ତରଙ୍ଗିଣୀ
ସଂଯୋଜିବ ବିଧି ପ୍ରକାର,
ବିବୁଧେ ! ବିନୟେ କରଇ ପ୍ରାର୍ଥନା,
ହେବ ଯା ଆଦେଶ ପାଳିବି ଅବଶ୍ୟ
ନାହିଁ ତହିଁ ଆନ ଭାବନା ।୩୭।

ଝରାଇ ନୟନ ଭାଷନ୍ତି ନୃମଣି
''କ୍ଷମ ମୋ ଦୁହିତାର ଦୋଷ
ଏ ନୁହେଁ ନୂତନ ଅଛି ତ ପୁରାଣ
କି ଆଙ୍କାହୁଏ ପ୍ରଜାବଂଶ !''
ଏମନ୍ତେ, କହି ନିବର୍ତ୍ତନ୍ତେ ରାଜନ
ଜୟଧ୍ୱନି ସଙ୍ଗେ ଉଠୁ କୋଳାହଳ
ମୁକ୍ତ ହେଲ କବି ବନ୍ଧନ ।୩୮।

ଓହ୍ଲାଇ ନରେଶ ମତାଙ୍ଗଜ ପୃଷ୍ଠୁଁ
ଧରି ଜେମାକର ଶ୍ରୀକରେ
ଉଭା ହୋଇ ବିପ୍ର- ଗୁମୁରେ ଭାଷନ୍ତ
ସମର୍ପିଲି କନ୍ୟା ଶ୍ରୀକରେ ।
କବୀନ୍ଦ୍ର ! ଯେବେ ଦକ୍ଷିଣା ସୁଚଉରେ
ଶୁଣି ଶିହରିଲେ ନବ-ବରବଧୂ
ବିଳସିଲା ସ୍ମିତ ଅଧରେ ।୩୯।

ମେଘ ମୁକ୍ତ ରାକା ଶଶାଙ୍କ ଲଭିଲା
ବିଶ୍ୱ-ଆହ୍ଲାଦନୀ ଜ୍ୟୋତ୍ସ୍ନା
ଦୀର୍ଘ ନିଶା ଶେଷେ ରଥାଙ୍ଗୀ ଶୋଭିଲା
କାନ୍ତ କୋଳେ ସାରି ବେଦନା
ସେ ରୂପେ, ନଗର ଜନେ ମନେ ଭାବି ।
ଗାଇଲେ ଗୀତିକା ଧନ୍ୟ ମଞ୍ଜୁଲତା
ଜୟ ଜୟ ହେ **ଚୈତ୍ରରଥ** ।୪୦।

**ସ ମା ପ୍ତ ।**

ମୁଦ୍ରାକର—ଶ୍ରୀ ଚନ୍ଦ୍ରମଣି ମିଶ୍ର, ନବଜୀବନ ପ୍ରେସ, କଟକ-୨